# ବାପା

ଶ୍ରୀ କମଳାକାନ୍ତ ଦାସ

ଓଡ଼ିଶା ବୁକ୍ ହାଉସ୍
ବ୍ରହ୍ମପୁର-୧ . ଗାଞ୍ଜାମ.

# ଏକ

ବାପା, ହେ ବାପା, ନାନ, ହେ ।

ବିକଳ ହୋଇ ଝିଅ ପିଲାଟି ଏଣୁ ତେଣିକି, ତେଣୁ ଏଣିକି ଧାଉଁଛି, ବାପାକୁ ଖୋଜୁଛି, ପିଇସୀଙ୍କି ଖୋଜ ହେଉଛି ।

ହେ ନାନ; ମୋ ବାପା କୁଆଡ଼େ ଗଲେ ? ମୁଁ କିବୁଦ୍ଧି କରିବି ଲୋ ! ଧାଇଁଛି ଝିଅ ପିଲାଟି । ଏଗାର ବାର ବର୍ଷର ଏକୁଟିଆ ଝିଅଟି ବିକଳ ହୋଇ ଡାକ ଛାଡ଼ୁଛି । କିନ୍ତୁ ଲୋକ ଗହଳି ଭିତରେ କିଏ ତା କଥା ଶୁଣୁଛି ? ଦିନ ବେଳେ ରହି ରହି ଅନେକ ଥର ବର୍ଷା ହୋଇ ଯାଇଛି । ଆକାଶରେ ଠାଆକୁ ଠାଆ କଳା କଳା ମେଘ ଖଣ୍ଡମାନ ଭାସି ଯାଉଛି । ଚାରିଆଡ଼େ ବାଲି ପନ୍ତର । ଅଦୂରରେ ସମୁଦ୍ର ଗର୍ଜନ । ଆକାଶ ଅବନୀ ଘୋର ଅନ୍ଧକାରରେ ଘୋଡ଼େଇ ହୋଇ ରହିଛି । ଚନ୍ଦ୍ରଭାଗାର ଆଣ୍ଠିଏ ଗହୀରା କାଦୁଅ ପାଣିରେ ମାଘ ସପ୍ତମୀ ବୁଡ଼ ପକାଇବା ପାଇଁ ଅଗଣିତ ଯାତ୍ରୀ ରାତିରୁ ଆସି ରୁଣ୍ଡ ହୋଇଛନ୍ତି । କାଁ ଭାଁ ଏଣେ ତେଣେ ଗୋଟାଏ ଦିଇଟା ଆଲୁଅ ମିଞ୍ଜି ମିଞ୍ଜି ହୋଇ ଜଳୁଛି, ସତେକି ଅମା ଅନ୍ଧକାର ଭିତରେ କେତୁଟା ଜୁଳୁଜୁଳା ପୋକ । ସମୁଦ୍ର ଗର୍ଜନ ଓ ଗହଳିର କୋଳାହଳ ଏକୁ ସେ ଏବଂ ତାକୁ ଇଏ ବଳି ପଡ଼ୁଛନ୍ତି । କିଏ ହାରୁଛି କିଏ ଜିତୁଛି, ଜାଣିବା ମୁସ୍କିଲ । ସମସ୍ତେ ନିଜ ନିଜ ପାଇଁ ବ୍ୟଗ୍ର, ବିବ୍ରତ । ମାଘ ସପ୍ତମୀ ପାହାନ୍ତା ପହରର କମ୍ପମାନ ଶୀତ-

ସାଙ୍ଗକୁ କନକନଆ ପବନ । ଚନ୍ଦ୍ରଭାଗାରେ ବର୍ଷକୁ ଥରେ ବୁଡ଼ ପଡ଼େ । କିଏ କୁଆଡ଼ୁ ଆସି ରୁଣ୍ଡ ହୋଇଚନ୍ତି ତାର ଠିକଣା ନାହିଁ । ଏକୁଟିଆ ଝିଅଟି ବିକଳ ହୋଇ ଏଣେ ତେଣେ ଧାଁଦୌଡ଼ କରି ବାପା ଓ ପିଉସୀଙ୍କୁ ଖୋଜି ହେଉଚି । ଦେହରେ ତାର ଓଦା ଲୁଗାଟି ଜଡ଼ ଯାଇଚି । ଶୀତୁଆ ପବନରେ ଦେହ ହାତ ଥରୁଚି । ଗହଳି ଭିତରେ କାହା ସହିତ ଧକ୍କା ଖାଉଚି, କିଏ ଅବା ତାକୁ ମାଡ଼ି ମକଚି ପକାଉଚି । ଅନ୍ଧକାର ଭିତରେ ବୁଡ଼ ପକାଇଲା ବେଳକୁ ବାପା ଓ ପିଉସୀଙ୍କଠାରୁ ସେ କେମିତି କେଜାଣି ଦୂରେଇ ଯାଇଚି । ସେମାନେ ହୁଏତ ଏକୁ ଖୋଜି ହେଉଚନ୍ତି, ଇଏ ତାଙ୍କୁ ଖୋଜି ବୁଲୁଚି । ଖୋଜା ଖୋଜିରେ ବାପା ଓ ନାନୀ ହୁଏତ ତଫାତ ହୋଇ କିଏ କୁଆଡ଼େ ବୁଲୁଚନ୍ତି । ବିକଳ ହୋଇ ଡାକ ଛାଡ଼ୁଚନ୍ତି—ରାଧା, ରାଧା, ହେ ରାଧି ।

ରାଧା, ଅନୁରାଧା, ଶ୍ରୀରାଧା, ରାଧି, ରାଧାମଣି ।

ସାହିରେ ପଡ଼ିଶାରେ କିଏ କେଉଁ ନାଁ ଧରି ଡାକେ ତାର ଠିକଣା ନାହିଁ । ସୁନ୍ଦର ଝିଅଟି । ପାଞ୍ଚ ଛଅ ବର୍ଷ ବେଳେ ମାଆ ମରିଗଲା । ବାପା ଦିବ୍ୟସିଂହ ରାଜଗୁରୁ ଦିବ୍ୟ ସୁନ୍ଦର ପଣ କାଠି ଗଢ଼ି ଜାଣନ୍ତି । ଏଣେ ତେଣେ ଚମତ୍କାର ଆଡ଼ଡ଼ା ଜମାନ୍ତି । ସ୍ତ୍ରୀ ପୀତାମ୍ବରୀ ମଲାବେଳକୁ ତାଙ୍କୁ ମାତ୍ର ପଇଁତିରିଶଟି ବର୍ଷ । କୋଳରେ ଗୋଟିଏ ସନ୍ତାନ—ରାଧା । ଝିଅ ସେଇ । ପୁଅ ବି ସେଇ ।

ରାଧାକୁ ଛାଡ଼ି ଦିବ୍ୟସିଂହ ରାଜଗୁରୁଙ୍କ ପରିବାରରେ ଆଉ ଗୋଟିଏ ପ୍ରାଣୀ— ବିଧବା ଭଉଣୀ । ବୟସରେ ଦିବ୍ୟସିଂହଙ୍କଠାରୁ ଆଠ ବର୍ଷରେ ବଡ଼ । ବିଧବା ହେଲାବେଳକୁ ସେ କୁଳରେ

କେହି ନ ଥିବାରୁ ଏ କୂଳରେ ଆସି ଲାଗି ଯାଇଛନ୍ତି । ଲାଗି ଯାଇଛନ୍ତି, ନିରାଶ୍ରୟା ଅସହାୟା ଅନାଥା ଭାବେ । ପିଲାପିଲି କିଛି ନଥିଲେ । ସମ୍ପତ୍ତି ଭିତରେ ଗୁଣ୍ଠେ ଦିଗୁଣ୍ଠ ଘରବାଡ଼ି—ଡ଼ିହ ଉପରେ ଖଣ୍ଡେ ଚାଳ ଘର—ଦୋଟି ବଖୁରି ମାତ୍ର । ସ୍ୱାମୀ ଦିଗମ୍ବର ମହାପାତ୍ରଙ୍କର ସମ୍ପତ୍ତି ଭିତରେ ଥିଲା—ପୈତୃକ ଆଭିଜାତ୍ୟ ଓ ଦାରିଦ୍ର୍ୟ । ଘରେ ଅଣ୍ଡ୍ରାଳ ଆସିଲେ ଦି ଚାରିଟା ଭାଙ୍ଗ ଘୋଠା, ଖଲ ଓ ସହଜମାରି କାଠର ଭାଙ୍ଗ ଘୋଠା, ବାଡ଼ି ଖଣ୍ଡେ । ଡ଼ିହ ଚାରି କଡ଼େ କଳା ଧୂତୁରା ଗଛର ବଣ ବୁଦା । ଦାଣ୍ଡରେ ଚୌପାଢ଼ୀଟିଏ । ପୀତାମ୍ବରୀ ଆଖି ବୁଜିଲା ବେଳକୁ ଦିବ୍ୟସିଂହ ଛୋଟ ଝିଅଟିକୁ ଧରି ଭୋଓକିନା କାନ୍ଦି ଉଠିଲେ—ତୁ ତ ଛାଡ଼ିଗଲୁ, ଏ ଛୁଆଟିକୁ ମଣିଷ କରିବ କିଏ ?

ବିଧବା ଭଉଣୀ ମନୋରମା ନିଜ ଆଖିର ଲୁହ ପୋଛି ପକାଇ ସାନ ଝିଅଟିକୁ ନିଜ କୋଳ ଭିତରକୁ ଉଠାଇନେଇ କହିଲେ—"କାହିଁକି ଏତେ ଭାଳ ହେଉଚୁରେ ସିଂହ, ଦୁନିଆରେ ଜନ୍ମହେଲେ ସମସ୍ତେ ମରନ୍ତି । କିଏ ଆଗ କି କିଏ ପଛ । ଯିଏ ଗଲା ସେ ଗଲା, ଯେତେ ତୁ କାନ୍ଦି ବାଉଳେଇ ହେଲେ ସେ କଅଣ ଆଉ ତୋ ଆଡ଼କୁ ଫେରି ଚାହିଁବ" ?

ଦି ଆଖିରୁ ଲୁହଧାର ବୋହି ପଡ଼ୁଚି, ଦିବ୍ୟସିଂହ କହି ଉଠିଲେ—"କଅଣ କହିଲୁ ନାନି ? ସେ ମତେ ଆଉ ଫେରି ଚାହିଁବ ନାହିଁ ? ଏତେ ଧନ ନେଇ ତାକୁ ଘରସଂସାର କଲି । ଏତେ ଦୁଃଖ, ଏତେ ସୁଖ, ଏତେ ମାନ ଅପମାନ, ସାମାନ୍ୟ ଟିକିଏ ମୋ ଦେହ ଇସ କିନା ହେଲେ ନଖାଇ ନପିଇ ସେବାରେ ସେ ଲାଗି ପଡ଼ୁଥାଏ । ଆଜି ସେ ମତେ ଏକୁଟିଆ ଛାଡ଼ି ଯିବ କେମିତି ? ଏ ଛୁଆକୁ ସେ ଜନମ କରିଚି । ଅଣ୍ଟା ପୁଟାଇ ଏଡ଼ୁଟି-

ଏ କରିଚ, କଅଣ କହୁଚୁ ନାନ, ତାକୁବ ଛାଡ଼ି ଚାଲିଯିବ । ତାକୁବ ଅନାଇବ ନାହିଁ । ଆଣିଲୁ ପାଣି ମୁଠାଏ । ତା ମୁହଁକୁ ଛିଞ୍ଚିଦିଏ । ଗୋଲମରିଚ ଦିଟା ଆଣିବୁଟି, ପାଟିରେ ପକାଇ ତା କାନଟା ଫୁଙ୍କେ । ଚେତା ବୁଡ଼ି ଯାଇଚ । ଚେତା ଫେରି ଆସିଲେ ସେବ ଉଠିବ ନାନ । ସେବ କଥା କହିବ । ସେବ ଡ଼ାକ ଉଠିବ— ଶୁଣୁଚ, ଏଣିକି ଟିକେ ଧୁଞ୍ଚି ଆସିବଟି ମୋ ରାଧା କାହିଁ ଡ଼ାକବଟି" ।

ଦିବ୍ୟସିଂହ ବିଶ୍ୱାସ କରିପାରୁ ନାହାନ୍ତି, ପୀତାମ୍ବର ଚିରଦିନ ପାଇଁ ଆଖି ବୁଜି ଦେଇଚନ୍ତି ବୋଲି ।

ମନୋରମା ପିଲ୍ଟାକୁ ଛାତି ଉପରକୁ ଟେକି ନେଇ କହିଲେ— "ଛାଡି ଦେରେ ସିଂହ, ସେ ମୂର୍ଦାରଟାକୁ । ରାଧି ବୋଉ ଆଉ ଫେରିବ ନାହିଁ । ଚିରଦିନ ପାଇଁ ସେ ଛାଡ଼ି ଚାଲି ଗଲାଣି । ଚଢ଼େଇ ଉଡ଼ି ଗଲାଣିରେ ସିଂହ । ଖାଲି ପିଞ୍ଜରାଟି ପଡ଼ିଚ ।"

ଘନ ଅନ୍ଧକାର ଭିତରେ ବାପା, ନାନୀ ଓ ରାଧା କିଏ କାହାକୁ କେଉଁ ଦିଗରେ ଖୋଜି ବୁଲୁଚନ୍ତି । କିଏ କୁଆଡ଼େ ଗଲେ ତାର ଠିକଣା ନାହିଁ । ପୂର୍ବ ଗଗନ ତଳେ ମେଘ ଆଉ ସମୁଦ୍ର ଏକାକାର ହୋଇଥିଲେ । ଧୀରେ ଧୀରେ ଆଲୋକ ରେଖାଟିଏ ଫୁଟି ଉଠିଲା । ଧୀରେ ଧୀରେ ବାଳଅରୁଣ ଲୋହିତ ଫେଣ୍ଟୁଳା ପରି ପାଣି ଉପରକୁ ନାଚି ଉଠିବାକୁ ଆରମ୍ଭ କଲା । ଅଗଣିତ ଦର୍ଶକର କୌତୂହଳୋଦ୍ଦିପ୍ତ ଚକ୍ଷୁ ସାମନାରେ କଅଁଳା ବାଛୁରି ପରି ସମୁଦ୍ର ପାଣି ଉପରୁ ଶୂନ୍ୟ ଆକାଶକୁ ସୂର୍ଯ୍ୟ ଡେଇଁ ପଡ଼ିଲା । ହରିବୋଲ, ହୁଳହୁଳିରେ ଗଗନପବନ କମ୍ପି ଉଠିଲା । ସୌରଜଗତର ସୃଷ୍ଟି-କାରୀ ବରେଣ୍ୟ ସବିତା ଧୀରେ ଧୀରେ ଲୋହିତ ରଙ୍ଗ ବଦଳାଇ

ଉଜ୍ଜ୍ୱଳ ଢ଼ଳ ଢ଼ଳ ଆଲୋକ ପିଣ୍ଡୁଳାରେ ପରିଣତ ହେଲେ ଏବଂ ଉପରକୁ ଉଠିବାକୁ ଲାଗିଲେ । ଧୀରେ ଧୀରେ ଚନ୍ଦ୍ରଭାଗାରୁ ଲୋକ ଗହଳ ଭାଙ୍ଗିଲା । ବାଲି ପନ୍ଥାର ଉପରେ କିଏ କୁଆଡ଼େ ଚାଲିଲେ । ତାର ଠିକଣା ନାହିଁ ।

ସାତଥର ଗଲି ଗଙ୍ଗା,
ଥରେ ଯାଇଥିଲି ଚନ୍ଦର ଭାଗା—
ମୁହିଁ ପଡ଼ିଗଲି ରଙ୍ଗା ।

ମାଘ ସପ୍ତମୀର ଚନ୍ଦ୍ରଭାଗା ବୁଡ଼ । କାହା ମନରେ କେତେ ଆଶା । କୋଣାର୍କ ମନ୍ଦିର ଚନ୍ଦ୍ରଭାଗା ଠାରୁ ଦୁଇ ମାଇଲ ବାଟ । ସୂର୍ଯ୍ୟମନ୍ଦିର ଏବେ ତିଆରି ହୋଇଚି କହିଲେ ଚଳେ । ଚନ୍ଦ୍ରଭାଗା ନଈରେ ପଥର ବୁହାହୋଇ ଆସିଥିଲା କୋଣାର୍କ ମନ୍ଦିର ନିର୍ମାଣ ପାଇଁ । ଚନ୍ଦ୍ରଭାଗା ନଈ ଏବେ ପୋତିହୋଇ ପଡ଼ିଚି । ଚନ୍ଦ୍ରଭାଗାର ପ୍ରସିଦ୍ଧି ବହୁତ ପୁରାତନ । ଶ୍ରୀକୃଷ୍ଣଙ୍କ ପୁଅ ଶାମ୍ବଙ୍କୁ କେବେ କୁଷ୍ଠରୋଗ ହୋଇଥିଲା । ଚନ୍ଦ୍ରଭାଗାରେ କିଛିକାଳ ରହି ସେ ସୂର୍ଯ୍ୟଦର୍ଶନ କରି ରୋଗମୁକ୍ତ ହୋଇଥିଲେ । ପରବର୍ତ୍ତୀ କାଳରେ କେଉଁ ଭକ୍ତ କବି କାହାର ଅଭିଶାପରେ କୁଷ୍ଠଗ୍ରସ୍ତ ହୋଇ ଚନ୍ଦ୍ରଭାଗାକୁ ଆସିଥିଲେ । "ସୂର୍ଯ୍ୟଶତକ" ରଚନା କରି ସେ ପ୍ରତ୍ୟହ ବାଳାରୁଣ ଦର୍ଶନ କରୁଥିଲେ । ଚନ୍ଦ୍ରଭାଗାର ପ୍ରସିଦ୍ଧି ସୂର୍ଯ୍ୟ ଦର୍ଶନ ଓ କୁଷ୍ଠ ନିବାରଣ ଲାଗି । ଏଇଥି ପାଇଁ କୋଣାର୍କ ମନ୍ଦିର ନିର୍ମାଣ ଓ ସୂର୍ଯ୍ୟ ବିଗ୍ରହର ପ୍ରତିଷ୍ଠା । ଏଇ ଚନ୍ଦ୍ରଭାଗା ନିକଟରେ କେବଳ ଭାରତ କାହିଁକି, ସାରା ପୃଥିବୀରେ କୋଣାର୍କର କାରୁକାର୍ଯ୍ୟ ଓ କଳା କୁଶଳତା ସୁପ୍ରସିଦ୍ଧ ।

କନ୍ଦୁ ରାଜଗୁରୁ କାହାନ୍ତି ? ମନୋରମା କାହାନ୍ତି ? ବାର ତେର ବର୍ଷର ଏକୁଟିଆ ଝିଅଟି ବାଇବାଟୁଳ ପରି ଏଣେ ତେଣେ ଧାଇଁଚି । ଏକୁ ତାକୁ କାକୁସ୍ତ ହୋଇ ଅନାଉଚି । ସକାଳ ହେଲା । ଧୀରେ ଧୀରେ ଜନସ୍ରୋତଟିଏ ମନ୍ଦର ଆଡ଼କୁ ଚାଲିଲା । ତାରି ଭିତରେ ଧୀରେ ଧୀରେ ଆଗେଇ ଚାଲିଲା ରାଧା । ଦହର ଓଦା ଲୁଗା କହଲା ପବନରେ ଶୁଖି ଆସିଲାଣି । ଆଖିର ଲୁହ ଶୁଖି ଯାଉଚି । ଭିତରେ ଭିତରେ ମନଟା କଡ଼ ପାଲଟି ଯାଉଚି । ମନ ଭିତରଟା ଶୂନ୍ୟ ଲାଗୁଚି, ପାଦ ଶିଥିଳ ହୋଇ ପଡ଼ିଲାଣି । କୁ କୁ କୁ କୁ କରି ସେ ଏଣେ ତେଣେ ଆଖି ବୁଲାଇଚି । ଚକିତ ହରିଣୀ କୁଆଡ଼ି ଦଳ ଛାଡ଼ି ଏକୁଟିଆ ହୋଇ ପଡ଼ିଲେ ଯେମିତି ଭୟ ଓ କାତରତାରେ କାକୁସ୍ତ ହୋଇ ପଡ଼େ, ଚଙ୍ଗଚଙ୍ଗ ହେଉଥାଏ, ଠିକ୍ ସେମିତିଆ ତାର ଅବସ୍ଥା । ବାପା ଆଉ ନାହାଁ, କଏ କୁଆଡ଼େ ଗଲେ ! କାହିଁ କାହାରି ତ ଦେଖା ଦର୍ଶନ ମିଳୁନାହିଁ ।

ପିତାମହଙ୍କ ମରିଯିବାର ସାତ ଆଠବର୍ଷ ପୂରିଗଲାଣି । ସେ ଥିଲାବେଳେ ଦିବ୍ୟସିଂହ ରାଜଗୁରୁ ଥିଲେ ଗୋଟିଏ ଫୁଙ୍ଗୁଲା ମଣିଷ । ସେ ମଲା ପରେ ଇଏ ଧୀରେ ଧୀରେ କଅଣ ଗୋଟାଏ କେମିତି ହୋଇ ପଡ଼ିଚନ୍ତି । ଯୋଡ଼ ଛାଡ଼ିଗଲେ ସଂସାରଟା ଅନାସକ୍ତ ଲାଗେ । ମନଟା ବାଉଳା ଚାଉଳା ହୋଇଯାଏ, ପ୍ରାଣ ଭିତରେ ଟଙ୍ଗଟଙ୍ଗା ବହୁ ବହୁ ସ୍ମୃତିର ନିଷ୍କଳ ହୋଇଯାଏ । ଜୀବନଟା ମନେ ହୁଏ ସତେକି ନିର୍ଜୀବ, ଶୂନ୍ୟମଣ୍ଡଳପରି । ଅଛୁ କି ନାହିଁ, ବଞ୍ଚିଚି କି ମରିଚି, ସଂସାରଟା ଅଛୁ କି ଗଲାଣି ସବୁ ଜ୍ଞାନ ଧୀରେ ଧୀରେ ବିଲୁପ୍ତ ହୋଇଯାଏ । ମଣିଷର ସଂସାରରେ ଆଉ ଗୋଟାଏ ମଣିଷର ଅଭାବଟା ଯେ କେତେ ବେଶୀ; ସେ କଥା ଜାଣେ କେବଳ

ଅନୁଭବୀ । ତା ଛଡ଼ା ଅନ୍ୟ କେହି କଥାର ଲେଶ ମାତ୍ର ଅନୁମାନ କରି ପାରିବେ ନାହିଁ ।

ପିତାମହୀ ଚାଲି ଯାଇଛି, ବାଜଗୁରୁଙ୍କର ସବୁ ଚାଲି ଯାଇଛି । ଜଡ଼ ମନଟାର ଜଡ଼ତା ବଢ଼ାଇ ଆପଣାକୁ ନିଜ ପାଖରେ ଅବହେଳା ଭୁଲାଇ ରଖିବା ପାଇଁ ବାଜଗୁରୁ ଗଞ୍ଜେଇ, ଗଞ୍ଜା ଓ ଭାଙ୍ଗର ମାତ୍ରା ବଢ଼ାଇ ଦେଇଛନ୍ତି । ନିଜକୁ ସବୁବେଳେ ଅଜ୍ଞାନ କରି ରଖିବାକୁ ଧୂତୁରା ବୀଜର ମାତ୍ରା ଧରିଲେଣି । ତଥାପି ରହି ରହି ମନ ଗହ୍ୱରର କେଉଁ ଅନ୍ଧାରିଆ କୋଣରୁ ଶୁଭିଯାଉଛି ପିତାମହୀର ଅସ୍ପଷ୍ଟ ସ୍ୱର— 'ହେଇଟି ଶୁଣ, ମୋ ରାଧାଟିକି ନଜରରେ ରଖିଥିବଟିକି ।'

ଚନ୍ଦ୍ରଭାଗାର ଆଣ୍ଠୁଏ ପାଣିରେ ବୁଡ଼ଉଠି ଲୋକ ଗହଳି ଭିତରେ ଟିକିଏ ପୂର୍ବଦିଗକୁ ଘୁଞ୍ଚି ଯାଇଛନ୍ତି ଦିବ୍ୟସିଂହ—ହାତ ଯୋଡ଼ି ଶଙ୍କରାଚାର୍ଯ୍ୟଙ୍କର ଗଙ୍ଗାସ୍ତୋତ୍ର ପାଠ କରି ଉଠିଛନ୍ତି—

ଦେବୀ ସୁରେଶ୍ୱରୀ ଭଗବତୀ ଗଙ୍ଗେ,
ତ୍ରିଭୁବନ ତାରିଣୀ ତରଳ ତରଙ୍ଗେ ।

କିନ୍ତୁ ହାପୁ ଆଖି ଫେରାଇଲା ବେଳକୁ କିଏ କୁଆଡ଼େ ଅଦୃଶ୍ୟ ହୋଇ ଯାଇଛନ୍ତି—ଅନୁରାଧା ଗହଳି ଭିତରେ ଅନ୍ତର ହୋଇ ଯାଇଛି । ନାନୀ କାହିଁଗଲା, ସ୍ତୋତ୍ରପାଠ ଭୁଲି ହୋଇ ଯାଉଛି ସେ !

ଗଙ୍ଗେଚ ଯମୁନେ ଚୈବ
ଗୋଦାବରୀ ସରସ୍ୱତୀ

ହେ ନାନି, ନାନି, କାହିଁଗଲୁ । ରାଧା, ଅନୁ କି ଲୋ,

ଅନୁ କାହିଁ, ନାନି କାହିଁ ! ଆଠବର୍ଷ ତଳେ ଡ଼ାକୁ ଡ଼ାକୁ ଏମିତି ଭାବରେ ପିତାମହୀ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲା ।

ଆଜ ସନ୍ଦେହରେ ଭଉଣୀ ଓ ଝିଅ ଅନ୍ତର୍ଦ୍ଧାନ. ହୋଇଗଲେ । ଟିକିଏ ଭୁଲ ଓ ସାମାନ୍ୟ ଅସାବଧାନତା ବଶତଃ ଦୁନିଆରେ ଏଇଭଳି ଘରରେ ଗୋଟାଏ ଗୋଟାଏ ଭୟଙ୍କର ଦୁର୍ଘଟନା ଘଟି ଥାଏ । ସାମାନ୍ୟ ଭୁଲ ଲାଗି ରାମଚନ୍ଦ୍ରଙ୍କୁ କେତେ ଦୁଃଖ ସହିବାକୁ ପଡ଼ିଥିଲା । ଗୋଟାଏ ରାମ ରାବଣ ଯୁଦ୍ଧ ଓ ଗୋଟାଏ ଖଣ୍ଡପ୍ରଳୟ ଘଟିଥିଲା । ରାବଣର ବଂଶ ଲୋପ ହେଲା, ଏଣେ ସୀତାଦେବୀ ଜୀବନର ଶେଷ ମୁହୂର୍ତ୍ତରେ ଭୂଗର୍ଭରେ ପ୍ରବେଶ କରିବା ପର୍ଯ୍ୟନ୍ତ ଶତ ଲାଞ୍ଛନା, ସହସ୍ର ଅପମାନ ଏବଂ ଦୁଃଖ କଷ୍ଟ ସହିଲେ ।

ଇରେ ସିଂହ, ଆଲୋ ଅନୁ, ଆରେ ତେଣେ ହଜିଣ ଯାଇ କୁଆଡ଼େ ଗଲ ? ମୁଁ କବୁଦ୍ଧି କରିବଚି, କୁଆଡ଼େ ଯାଇଁ କାହାକୁ ଖୋଜିବଚି । କାହିଁକି ମୁଁ ଚଣ୍ଡାଳୁଣୀ ବୁଢ଼ୀ ପାରୁ ପାରୁ ତାଙ୍କୁ ନଜର ଦେଇ ପାରିଲି ନାହିଁ ! ମୋ ଆଖି ଦିଇଟା ଫୁଟି ଗଲା କାହିଁକି ଲୋ !!

ବୁଢ଼ୀ ମନୋରମା ଏଣେ ତେଣେ ବହୁତ ଧାଇଁଲା । ଶେଷକୁ ଆଗରେ ଅନୁ ଯାଉଚି ବୋଲି କାହାକୁ ଅନୁମାନ କରି ଗୋଟାଏ ବାଲିବନ୍ତ (କୁଦ) ଉପରେ ଚଢ଼ି ଅନ୍ଧକାର ଭିତରେ ଅଣ୍ଡାଳି ଅଣ୍ଡାଳି ଛାଦତଳେ କେତେ କଣ୍ଟାମାଡ଼, ଦଳେ ଲୋକଙ୍କ ପଛେ ପଛେ ଉଠି ପଡ଼ି ଦୌଡ଼ିଲା । କୁଆଡ଼େ ଯାଉଚି ଜାଣେ ନାହିଁ । କେତେ ବାଟ ଚାଲିଲାଣି ଜଣାପଡ଼ୁ ନାହିଁ । ଚାଲିଚି, ଆଗକୁ ଆଗକୁ ଚିହାଇ ଚିହାଇ ଡାକି ଯାଉଚି—ଅନୁ କଲୋ, ଇଲୋ ହେ ରାଧା, ରାଧା କଲେ ?

ଯାତ୍ରୀ ଭିତରୁ କିଏ କେତେ ତ କାହାକୁ ଡାକୁଚନ୍ତି, ବୁଢ଼ୀକି ପଚାରୁଚି ବା କିଏ !

ବାପ ଝିଅ ଓ ପିଉସୀ କେତେ ବାଟ ଚାଲି ଚାଲି ତିନି ଦିନେ ଚନ୍ଦ୍ରଭାଗାକୁ ଆସିଥିଲେ ବୁଡ଼ ପକାଇବା ପାଇଁ । ମାଘ ସପ୍ତମୀ ପାହାନ୍ତାରେ କିଏ ଯେ କୁଆଡ଼େ ଗଲେ କେହି ଜାଣି ପାରିଲେ ନାହିଁ । ଭୋର ହେଲା । ଖରା ପଡ଼ିଲା । ମନ୍ଦିର ବେଢ଼ା ଭିତରେ ଗହଳି ଯାତ୍ରୀ—ଧୀରେ ଧୀରେ ଭିଡ଼ ଭାଙ୍ଗି କିଏ କୁଆଡ଼େ ଚାଲିଲେ । ବାରଶହ ମହଣର ଗଜସିଂହ ମୂର୍ତ୍ତିତଳେ ମୁହଁଟି ଶୁଖାଇ ଆଖିଭିଜା ଛୁଆଟି ହୋଇ କାତର ଭାବରେ ଅନୁଟି ଇଆ ମୁହଁକୁ ତା ମୁହଁକୁ ଚାହିଁ ଚାହିଁ କାନ୍ଦୁଛି । କେହି କେହି ତା ଆଡ଼କୁ ଚାହିଁ ନିଜ ବାଟରେ ଚାଲି ଯାଉଛନ୍ତି ପିନା—ପଚାରୁ ନାହାନ୍ତି "ତୁ କିଏ" ବୋଲି । କେତେତ ଏମିତି ଭିକାରୀ କାଙ୍ଗାଳ ପିଲା ଏଣେ ତେଣେ ବୁଲୁଛନ୍ତି ଇଏତ ଏକା ନୁହଁ ।

ନଅଟା ଦଶଟା ବେଳକୁ ସେଇଠି ସେମିତି ଠିଆ ହୋଇ ରହି ଅତି ବିକଳରେ, "ବାପା ହେ, ହେ ନାନି" ବୋଲି ପିଲାଟି କାନ୍ଦି ପକାଇ ବାଲି ଉପରେ ବସି ପଡ଼ିଲା । କଡ଼କୁ ଲାଗିଆସି କିଏ ଗୋଟିଏ ଯୁବକ ଠିଆ ହୋଇ ପଡ଼ି ପଚାରିଦେଲା—'କିଏ ତୁ ? କାହିଁକି କାନ୍ଦୁଚୁ' ?

ଅଳ୍ପ ଦୂରକୁ ତାର ଠିଆ ହୋଇଛନ୍ତି ଜଣେ ପ୍ରୌଢ଼ା—ପାଖକୁ ଲାଗି ଆସିଲେ । ପଚାରିଲେ—"କିଏ ଲୋ ମା ତୁ ? କୋଉ ଗାଁରେ ଘର, ଏକୁଟିଆ ନା କିଏ ସବୁ ସାଙ୍ଗରେ ଆସିଛନ୍ତି, କାହାନ୍ତି ସେମାନେ" ?

ଫୋଓକିନା କାନ୍ଦି ଉଠିଲା ରାଧା !

'ମୋ ବାପା କୁଆଡ଼େ ଗଲେ, ମୋ ନାନୀ କାହିଁ' ?

'ବାପା ତୋର କିଏ ? ନାନୀ କିଏ' ?

'ମୋ ବାପା, ମୋ ନାନୀ ? ମୁଁ କୁଆଡ଼େ ଯିବି' ?

ପିଲାଟା ଆଉ କଷ୍ଟ କହିପାରୁ ନାହିଁ । ଦୁଃଖ, ଉଦ୍‌ବେଗ, ଅଧୀରତା ଓ ଅସହାୟତାରେ ସମ୍ପୂର୍ଣ୍ଣ କାତର ହୋଇ ପଡ଼ିଛି । ଏବେ ବି ସୁଦ୍ଧା ଦହିର ଲୁଗା ଖଣ୍ଡିକ ସମ୍ପୂର୍ଣ୍ଣ ରୂପେ ଶୁଖିପାରି ନାହିଁ ।

ଯୁବକ ଝିଅଟିର ହାତ ଧରିପକାଇ ଡ଼ାକିଲା—'ଆ ଏଣିକି । ବୋଉଙ୍କ ପାଖକୁ ଚାଲ ।'

ରାଧା ହାତ ଟାଣୁଛି । ଟାଣି ହେଉଛି । ତାକୁ ବାର ତେର ବର୍ଷ ହୋଇ ଗଲାଣି । ଅପରିଚିତ ଯୁବକର ହାତରୁ ନିଜ ହାତକୁ ସେ ମୁକ୍ତ କରି ନେବାକୁ ଚେଷ୍ଟା କରୁଛି । କିନ୍ତୁ ନିତାନ୍ତ ଅସହାୟ ଅବସ୍ଥାରେ ପଡ଼ିଥିଲାବେଳେ ଭଗବାନ ସାହାଯ୍ୟ ଦେବା ପାଇଁ ହାତ ବଢ଼ାଉଛନ୍ତି । ଛଳ ଛଳ ଆଖିରେ ଅନାଇ ରହିଛି ଯୁବକ ଆଡ଼କୁ । ପୁଣି ଆଖି ଦିଟାକୁ ଫେରାଇ ନେଉଛି ପ୍ରୌଢ଼ାଙ୍କ ଆଡ଼କୁ ।

ପ୍ରୌଢ଼ା ହାତ ବଢ଼ାଇ ଦେଲେ—"ଆ, ଆଲୋ ମା, ମୋ ପାଖକୁ । ଆମ ଗାଡ଼ି ପାଖକୁ ଆ । ତେଣିକି ତୋ ବାପାକୁ ଖୋଜିବା, ନାଆଁର ଖବର ନେବା । କିଏ କୁଆଡ଼େ ଥିବେ ଖୋଜି ଖୋଜି ଆସିବେ ଯେ ! ହେଇଟି ଆମ ଶଗଡ଼ଟା ବେଢ଼ା ବାହାରେ ଠିଆ ହୋଇଛି । ଆ ସେଠିକି ।"

ଧୀରେ ଧୀରେ ପ୍ରୌଢ଼ାଙ୍କ ହାତ ଭିତରେ ନିଜର ଶ୍ରେଷ୍ଠ ହାତ ଖଣ୍ଡିକୁ ସମର୍ପି ଦେଇ ଅନୁରାଧା ଅତି ସଙ୍କୁଚିତ ଭାବରେ ଅପରିଚିତ ମା ପୁଅ ଦୁହିଁଙ୍କ ସଙ୍ଗରେ ଚାଲିଲା ଶଗଡ଼ ପାଖକୁ । ବଡ଼ ବଡ଼ କଇଁଫୁଲିଆ ବଳଦ ଦିଇଟା ପାଖ ବାଉଁଁ ଗଛରେ ବନ୍ଧା-ହୋଇଛନ୍ତି । ଆଗରେ ପଡ଼ିଥିବା ପାଳକୁଟା ଚୋବାଉଛନ୍ତି । ବେକରେ ଘଣ୍ଟି ଘାଗୁଡ଼ି ମାଳେ ମାଳେ ଝୁଲୁଛି—ବାଜି ଉଠୁଛି ।

ବୋଉ କହିଲେ—"ଇରେ ଗୋବିନ୍ଦ, ଗାଡ଼ି ଭିତରୁ ଖଣ୍ଡେ ଶୁଖିଲା ଲୁଗା ଦବୁଟି ଏ ଝିଅକୁ, ଓଦା ଟିଣ୍ଡକ ବଦଳି ପକାଉ। ବ୍ରାହ୍ମଣ ଘରର ଝିଅପରି ଦିଶୁଚି"।

ଯୁବକ ପୁତ୍ର ନରୋତ୍ତମ ବଡ଼ ଗାଡ଼ିଟା ଭିତରକୁ ଥିବା ଟ୍ରଙ୍କରୁ ଖଣ୍ଡେ ସବୁଜ ରଙ୍ଗର ଶାଢ଼ି କାଢ଼ି ଆଣି ଅନୁକୁ ଦେଲା।

"ପିନ୍ଧିପକା ଲେ ଝିଅ; ଏଣିକି ତୋ ବାପାକୁ ଖୋଜିବା, ତୋ ନାମାଙ୍କ ଖୋଜ ବାହାର କରିବା।"

ଶଗଡ଼ଆକୁ ଡାକି ପ୍ରୌଢ଼ା କହିଲେ—"ଯିବୁଟିରେ ସଇଡା—ଦେଖିବୁଟି ବେଢ଼ା ଭିତରେ କଏ ଖୋଜ ହେଉଥିବ ଏ ଝିଅଟିକି। ଇଲୋ ମା ତୋ ବାପା ନାଆଁ କଅଣଟି?"

ଲୁଗାଟାକୁ ବଦଳୁ ବଦଳୁ ଅନୁ କହିଲା ସିଂହ ରାଜଗୁରୁ।

ଅନୁରାଧା କେତେକାଂଶରେ ଆଶ୍ୱସ୍ତ ହୋଇ ଉଠିଲାଣି। ଉଦ୍‌ବେଗ ତାର ଅନେକ ପରିମାଣରେ କମିଗଲାଣି, ବିପଦରେ ହିଁ ମଣିଷ ମଣିଷ ପାଖରେହିଁ ଆଶ୍ରୟ ଖୋଜିଥାଏ ଏବଂ ମଣିଷ ପାଖରେହିଁ ସାହାଯ୍ୟ ପାଇଥାଏ।

---

# ଦୁଇ

ଚାରିଟା ବେଳକୁ କୋଣାର୍କ ମନ୍ଦିର ଶୂନ୍ ଶାନ । କିଏ କୁଆଡ଼େ ଚାଲିଗଲେ । କାଁ ଭାଁ ଜଣେ ଦିଜଣ ଚଲାବୁଲା କରୁଛନ୍ତି । ବର୍ଷକ ପାଇଁ ମାଘ ସପ୍ତମୀ ଯାତ୍ରା ଭାଙ୍ଗିଲା । ଯେତେ ଯାହା ଖୋଜା ଖୋଜି କଲେ ସୁଦ୍ଧା ମନୋରମା କିମ୍ବା ଧଜଗୁରୁଙ୍କର କୌଣସି ସନ୍ଧାନ ମିଳିଲା ନାହିଁ । ମୁହଁଟି ଶୁଖାଇ ରାଧା ଶଗଡ଼ ପାଖରେ ଏଣେ ତେଣେ ଖାଲି ଆଖି ବୁଲାଇବାକୁ ଲାଗିଲା । ଦୀର୍ଘ ନିଶ୍ୱାସ ଛାଡ଼ି ଯୁବକ ନରୋତ୍ତମ କହିଲା—'କଅଣ ଆଉ କରିବା ବୋଉ' ?

ଦୀର୍ଘଶ୍ୱାସ ଛାଡ଼ିଲେ ପ୍ରୌଢ଼ା, ପଦ୍ମବାସିନୀ ଦେବୀ । ରାଧା କାନ୍ଦି ହଉଛି । ସାନ ପିଲାଟିର ଦୁଃଖ ବର୍ଣ୍ଣନା କରି ହେବନାହିଁ । କାତର ଭାବରେ ପଦ୍ମବାସିନୀଙ୍କ ଆଡ଼କୁ ଦୃଷ୍ଟି ନିକ୍ଷେପ କରୁଛି ।

ଗାଡ଼ିବାଲା କହିଉଠିଲା—"ଚାରିଆଡ଼େ ଖୋଜି ଖୋଜି ନିସ୍ତାନ୍ତ ହୋଇ ଗଲୁଣି ମା, ସମସ୍ତେ ତ ଛୁଡ଼ିଛାଡ଼ି ଗଲେଣି । ରାତି ହୋଇ ଆସୁଛି । ଏକୁଟିଆ ଆମେ ଶଗଡ଼ ଖଣ୍ଡିକୁ ଧରି ପଡ଼ି ରହିବା—ଫଳ କଅଣ ହେବ ? ଘରକୁ ଚାଲିଯିବା ତେଣିକି ଯାହା ବରାଦ ।"

ନିରାଶ୍ରୟ ପରିସ୍ଥିତିର ଗୁରୁ ବୋଝ ଲଦି ହୋଇ ପଡ଼ୁଛି ନିଜ ଉପରକୁ । ବାପା ଆଉ ପିଉସୀକୁ ହରାଇ ଝିଅଟି ପୁଣି ଅବିରାମ କାନ୍ଦୁଛି । ଯେତେ ଆପଣାର କଲେବି ସେ କଅଣ ବୁଝୁଛି ?

ଦୁନଆରେ ରାଧାର ଆପଣାର ହୋଇ କେହି ରହିଲେ ନାହିଁ । ପାଞ୍ଚ ବର୍ଷରୁ ମାଆ ମରିଚି । ଆଜି ବାପା ଆଉ ପିଉସୀ ଛାଡ଼ି ଚାଲିଗଲେ । ବସୁ ବସୁ ଗଡ଼ି ପଡ଼ୁଚି ସେ ବାଲି ପନ୍ତାର ଉପରେ ।

ପଦ୍ମବାସିନୀ ଧରି ପକାଇଲେ ତା ହାତଟିକି, କହିଲେ— "କାହିଁକି କାନ୍ଦୁଚୁ ଲୋ ମା ? ତୁ ଚାଲ ମୋ ଝିଅ । ଚାଲ ଘରକୁ ଯିବା । ଆଜିଠଉଁ ମୁଁ ତୋର ମାଆ ହେଲି" ।

ଶଗଡ଼ରେ ବଳଦ ଦୁଇଟି ଯୋଚା ହେଲେ । ବଡ଼ତାଟ ଭିତରେ ବହଳ ବିଛଣା । ରାଧା ବସିଲା ମଝିକି, ପଦ୍ମା ବସିଲେ ଭିତରକୁ । ମୁହଁଣ୍ଡା ଉପରେ ବସିପଡ଼ିଲା ନରୋତ୍ତମ । ଘଣ୍ଟି ବାଗୁଡ଼ି ବଜାଇ ବଳୁଆ ବଳଦ ଦୁଇଟା ଉଚ ବାଲିବନ୍ତ ଉପରକୁ ଶଗଡ଼ ଟାଣି ଘର ମୁହାଁ ଧାଇଁଲେ । ସମୁଦ୍ର କୂଳିଆ ପବନ ଶୀତଳ ଲାଗୁଥାଏ । ସୁଲୁ ସୁଲୁ ବହୁଥାଏ । ଉଡ଼ାଇ ନେଇ ଯାଉଥାଏ ଗୋଟାକ ପଛକୁ, ଆଉ ଗୋଟାଏ, ତା ପଛକୁ ଆଉ ଗୋଟାଏ କରି କଣ୍ଟାର କନ୍ଦୁକ ଗୁଡ଼ିକଙ୍କୁ । ଚଲାବାଟର ଦୁକଡ଼କୁ କଇଁସାରି ଲଟା ହଳଦିଆ ବାଲି ଶେଯ ଉପରେ ସବୁଜ ଗାଲିଚ୍ଛା ବିଛାଇଥାଏ । ମେଘ ମୁକ୍ତ ଆକାଶ ନୀଳବର୍ଣ୍ଣ ଧରିଲାଣି । କେତେ ଜାତିର ଚଢ଼େଇ ବସା ମୁହାଁ ଧାଇଁଚନ୍ତି । କଡ଼କୁ ଠାଏ ଠାଏ ଘଞ୍ଚ କିଆ ବାଡ଼, ପାରୁ ପର୍ଯ୍ୟନ୍ତେ ବାଲିପନ୍ତାର ଉପରେ ନିଜର ବଂଶବୃଦ୍ଧି କରି ଚାଲିଚି ଏବଂ ଆକାଶକୁ କଣ୍ଟାପତ୍ରମାନ ଠିଆ କରାଇଚି । ବର୍ଷା ଦିନେ ଅପର୍ଯ୍ୟାପ୍ତ ଫୁଲ ଫୁଟାଇ ଜନମାନବଶୂନ୍ୟ ମରୁ ପ୍ରାନ୍ତରେ ଚତୁର୍ଦ୍ଦିଗ ବୃଥାରେ ମହକ ଛୁଟାଉଥିଲା । ଏବେ କାଁ ଭାଁ ପାଚିଲା କିଆ ପଣସ କେଇଟା ବହଳପତ୍ର ସନ୍ଧିରେ ଦିଶି ଯାଉଅଛି । ମଝିରେ ମଝିରେ ସନ୍ତସନ୍ତିଆ ପାଣି ଚବକା, କୂଳ ଚଉକତି ଲମ୍ବ

ଲମ୍ବ ଘାସ ଘାଙ୍ଗକୁ କେଉଠି, କାଣ୍ଡ କାଣ୍ଡିଆ ଫୁଲ ମୁଣ୍ଡଟେକ ଝାଉଁଳ ପଡ଼ିଲଣି । ଠାଏ ଠାଏ ବନ, ପାଟଳୀର ବଣ ବୁଦା— କେତୁଟା ପତ୍ର ଶୂନ୍ୟ, କେତୁଟାରେ ନୂଆ ପତ୍ର ଧରୁଚି । ଗୃହଆଡ଼ୁ ଅନ୍ଧକାର ଘୋଟି ଆସୁଚି । ଶଗଡ଼ିଆ ଶଗଡ଼ତଳେ ଝୁଲୁଥିବା ଲଣ୍ଠନଟା ଲଗାଇ ଦେଲଣି । ଅନ୍ଧକାର ଭିତରେ ଝାପସା ଆଲୁଅ । ମଣିଷ ଚଲାବାଟ ଏବେବି ଦେଖା ଯାଉଚି, ବାଟକଡ଼କୁ ଖଣ୍ଡେ ଅଧେ ଗାଁ । ବୋହୂଭୂଆସୁଣୀ ଗଡ଼ିଆ କୂଳରେ କାରବାର ହେଉଚନ୍ତି, ଭୂତ ଘାଟ ହେଉଚନ୍ତି । ହୁକେ ହୁକ୍କେକା ହୋ— ବିଲୁଆ ଦଳ ବଣବୁଦା ଭିତରେ ଡାକ ଛାଡ଼ିଲେଣି । ଶଗଡ଼ ଭିତରେ ନିର୍ଜୀବ ନିର୍ବାକ ଭାବେ ପଡ଼ିରହି ଅନୁରାଧା ଏକ ଲୟରେ ଆଗକୁ ଅନାଇଚି—ହଜିଲା ବାପକୁ ପାଇବା ପାଇଁ ।

କିନ୍ତୁ ବୃଥା, ବାପା ଦିଶୁନାହାନ୍ତି କି ନାମ ଦିଶୁନାହିଁ । ଭିତରେ ପ୍ରାଣଟା କାନ୍ଦିଉଠୁଚି । କିନ୍ତୁ ବାହାରେ ଜଡ଼ତା ମାଡ଼ି ଗଲାଣି । ରହି ରହି ଦୀର୍ଘ ନିଃଶ୍ୱାସ କେତୋଟି ଭିତରେ ଉଦ୍ବେଗ ଓ ଉତ୍କଣ୍ଠାର ପ୍ରମାଣ ଦେଉଚି ।

ଶଗଡ଼ ଆଗେଇ ଯାଉଚି । ବାଲିକୁଦ ଉପରକୁ ଉଠୁଚି, ତଳକୁ ଗଡ଼ି ଯାଉଚି । ଝାଉଁ ବଣ ଭିତରେ ପବନ ଧୁରି ଧୁରି ସାଉଁ ସାଉଁ ନିଶ୍ୱାସ ମାରୁଚି । ଗାଁ କଡ଼େ କଡ଼େ ନଡ଼ିଆ ମାଳ, ଉଞ୍ଚା ତାଳଗଛ ସାଙ୍ଗରେ ପ୍ରତିଯୋଗିତା କରୁଚି ଊର୍ଦ୍ଧ୍ୱକୁ ମୁଣ୍ଡ ଟେକ ଅନନ୍ତ ଆକାଶକୁ ଛୁଇଁବାପାଇଁ । ଅସ୍ପଷ୍ଟ ଅନ୍ଧକାର ଭିତରେ ଗାଁ ଗହଳର ମିଞ୍ଜି ମିଞ୍ଜି ଆଲୁଅ କେଇଟା ଦିଗନ୍ତପ୍ରୁ ଯନ୍ତ୍ରଭଳି ବାଟ ଚିହ୍ନାଇ ଦେଉଚି । ଗାଡ଼ି ଚାଲିଚି ଗଡ଼ ଗଡ଼ ଘଣ୍ଟି ଘାଗୁଡ଼ି

ବଜାଇ ବଜାଇ ଆଗକୁ ଆଗକୁ । ଅନେକ ବାଟ କଟିଲା ପରେ ଘଡି ବାରଟା ବେଳକୁ ଶଗଡ଼ ଗଡ଼ିଲା ବୁଢ଼ାନଈ ଅଡଡ଼ା ତଳକୁ । ଶୁଖିଲା ନଈରେ ଶୁଖିଲା ବାଲି, ଶଗଡ଼ ଚକ ଗଳି ପଡ଼ୁଚି । ବଳୁଆ ବଳଦ ଦିଟା ଗୁଳିଗୁଳି ହାଲିଆ ହୋଇ ପଡ଼ିଲେଣି । ଶଗଡ଼ିଆ ଗୁଳିଗୁଳି ଥକି ଗଲାଣି—ଆଉ ଭିଡ଼ ଘୁରାଇ ଦେବାକୁ ବହପ ପାଉନାହିଁ । ନରୋତ୍ତମ ତଳକୁ ଡେଇଁ ପଡ଼ି ପଛକୁ ଯାଇ ଦଣ୍ଡାରେ ହାତ ପକାଇ ଦେଲା । ବଳଦ ପିଠିରେ ହାତ ଆପୁଡେ଼ଇ ଅଣ୍ଟେଇ ଦେଲା ସଇତା । ଧୀରେ ଧୀରେ ଭୁଷା ବାଲି ଭିତରୁ ଚକ ଦିଇଟା ଉଠିଗଲା ମଟାଳ ଉପରକୁ । ସଇତା ଟାକରା ଫୁଟାଇ ବଳଦ ଲାଙ୍ଗୁଳରେ ହାତ ପକାଇ ଦେଲା । ନରୋତ୍ତମ ମୁହଁଣ୍ଡା ଉପରକୁ ଡେଇଁ ବସିପଡ଼ିଲା । ହୁଁ ହୁଁ କରି ଏକାଦମରେ ଶଗଡ଼ଟାକୁ ବଳଦ ଦିଇଟା ଭିଡ଼ି ନେଇ ଗଲେ ଆରପଟ ଅଢ଼ୁଙ୍ଗ ଉପରକୁ । ହେଇଟି ଆଗରେ ଗାଁଆ । ଘର ମୁହାଁ ବଳଦ ଭିଡ଼ି ନେଇ ଠିଆ ହୋଇଗଲେ ଦାଣ୍ଡପାହାଚ ତଳେ । ଦାଣ୍ଡ କବାଟ ଫିଟାଇ ଆଲୁଅ ଧରି କିଏ ବାହାରି ପଡ଼ିଲା ବାହାରକୁ । ସଇତା ବଳଦ କାନ୍ଧରୁ ଜୁଆଳଟାକୁ ଓହ୍ଲାଇ ଦେଇ ତଳେ ଥୋଇ ଦେଲା । ଅନୁରାଧା ତାଟକା ହୋଇ ଅନାଇଲା ବେଳକୁ ଆଖିପାଉ ନାହିଁ । ଧାଉଡ଼ିଏ ଲମ୍ବାଘର, ଉଚା ଉଚା, ଚଡାଏ ଉଞ୍ଚ ପିଣ୍ଡା । ବଡ଼ ବଡ଼ ପଥରର ପାହାଚ । ନରୋତ୍ତମ ଓହ୍ଲାଇ ପଡ଼ିଲା ପରେ ଅନୁରାଧାର ହାତଟାକୁ ଧରି ପଦ୍ମା ଡ଼ାକ-ଦେଲେ 'ଆ ଆଲୋ ମା, ଓହ୍ଲାଇ ଆ । ଆମ ଘର ହେଲା ପରି' !

ପଦ୍ମବାସିମାଙ୍କ ପଛେ ପଛେ ଅନୁରାଧା ଘରକୁ ପଶିଲା ବେଳକୁ କେତୋଟି ବିସ୍ମିତ ଆଖି ପ୍ରଶ୍ନବାଚକୀ ଛଳରେ ଅନାଇ

ରହିଚ ଅନୁରାଧାର ଗଣ୍ଡ ଆଡକୁ । ରାତି ସେତେ ହେଲେବି ସାଇ ପଡ଼ିଶାରୁ କେତେ ଜଣ ଆସି ଫେରିଗଲେଣି ବେଳେବେଳକୁ । କାହା ମନରେ କେତେ କଥା । କିଏ କେତେ ସବୁ ପଚାରି ଦେଉଚି, ପଦ୍ମବାସିନୀ ସମସ୍ତଙ୍କୁ ଉତ୍ତର ଦେବାକୁ ବେଳ କାହିଁ ? ମୋଟା ମୋଟି କହିଲେ— 'ପାଇ ଆଣିଚି । ଏଇଟି ମୋ ଝିଅ । ରାତି ବହୁତ ହେଲାଣି, କାଲିକି କହିବି' ।

× × × ×

•

"କାଲିକି କହିବି କହିଥିଲ କୁହ ମାଉସି । ଏଡ଼େ ସୁନ୍ଦର ଝିଅଟିକି କିଏ କେମିତି ଛାଡ଼ି ଦେଇ ଗଲା ମା, ତମେ ପାଇ ଆଣିଲ କେଉଁ ବନ୍ଧୁଘର ଝିଅ ତୁମର ନିଶ୍ଚେଁ" !

ବାଡ଼ରେ ପୋଖରୀ, କୂଳରେ ପଥରର ପାହାଚ । ଉପରକୁ ଚମ୍ପା, କୁରୁଅନା, ବଉଳ, ବେଲ, ନାଗେଶ୍ୱର ଆଦି କେତେ ଗଛଡ଼ଏ ଗଛ । ଆମ୍ବ, ପଣସ ଗଛ ବି କେଇଟା । ଗାଧୋଇବାକୁ ସାଇ ପଡ଼ିଶାରୁ ବହୁତ ଝିଅ ବୋହୂ ଆସନ୍ତି । ପଦ୍ମାଙ୍କୁ ସମସ୍ତେ ଘେରିଯାଇ-ଚନ୍ତି—'କୁହ ମାଉସୀ, ଏ ଝିଅଟି କିଏ' ?

ହସିବେ ନା କାନ୍ଦିବେ ? ପଦ୍ମା ମୁହଁଟିକି ଶୁଖାଇ ଦେଇ ସବୁ କଥା କହିଗଲେ । କହିଲେ—"ବ୍ରାହ୍ମଣ ଘରର ଝିଅ । ତା ଗାଁକୁ ଖବର ପଠାଇବା । ବାପ ଆସି ନେଇ ଯିବ । ସେତିକି ଦିନ ତାକୁ କେମିତି ଭୁଲାଇ ରଖିବ ଏଇ ହେଲା ମୋର ଚିନ୍ତା । କାଲି ଠଉଁ କାନ୍ଦୁଚି । ରାତିରେ କୋଳରେ ପୂରାଇ ଶୁଆଇଲି । ଆଖି

ଆଖିକସା କଲା ନାହିଁ । ସକାଳୁ ଏକୁଟିଆ ଥାନରେ ଠିଆ ହୋଇ ବୃତକ ପରି ବୁହିଁ ରହୁଛି । ଗାଲ ଖୋଜା ହେଉଛି ।

× × × ×

ଗାଲ ଖୋଜା ହେଉଛି । ଏକୁଟିଆ ଥାନରେ ବସିବସି ଭଲ ହେଉଛି । ଖରବେଳେ ଘରୁ ଖସି ପଳାଇ ଆସିଛି । ଏକୁଟିଆ ପୋଖରୀ ପାହାଚ ଉପରେ ବସି ଆରପାରିକୁ ଅନାଇ ରହୁଛି । ବଧାର ଲୁହ ବହି ଯାଉଛି ବଆଖିରୁ । ପାଖରେ କେହି ନାହିଁ ।

"ରାଧା, ଅନୁ"

ପଛରୁ କିଏ ଡାକିଲା ।

ଫେରିପଡ଼ି ବୁହିଁଲା ଅନୁରାଧା ।

ଓଠ ଦଣ୍ଟା ଥର ଥର ହୋଇ କମ୍ପୁଛି ।

ନରୋତ୍ତମ ବସିପଡ଼ିଲା—ତାର ହାତଟିକୁ ଧରିପକାଇ ପଚାରି ଦେଲା—'କାନ୍ଦୁଚୁ କାହିଁକି ? କାଲିଠଉଁ ଲୋକ ଗଲେଣି ଚଠିନେଇ ତମ ଗାଁଆକୁ । କାଲିପରି ବାପା ତୋର ଆସି ପହୁଞ୍ଚି-ଯିବେ, ଏତେ ଭାବୁଚୁ କଅଣ ? ଆ ବୋଉଙ୍କ ପାଖକୁ ଯିବା' ।

କିଛି କହିପାରୁ ନାହିଁ ଅନୁ । ଛଳଛଳ ଆଖିରେ ବୁହିଁ ରହୁଛି ମାତ୍ର । ଉଠିପାରୁ ନାହିଁ । ବସି ରହୁଛି କାଠ ପଥରର ମୂର୍ତ୍ତି ପରି ।

"କହୁଚି, କାନ୍ଦନା । ଆମେ କଅଣ ତୋର ପର ? ମୁଁ କଅଣ ତୋର କେହି ନୁହେଁ" ?

ସ୍ନେହ ମନ ଭିତରେ ଅନୁକମ୍ପି ଉଠୁଛି । ସ୍ନେହ ପ୍ରାଣରେ ତାର ଶିହରଣ । କିଛି ବୁଝି ପାରୁନାହିଁ, କିନ୍ତୁ ମମତାର ଢେଉ

ନରୋତ୍ତମ ଆଉ ଲୁଚିଆସି ଭୁଲ୍ କଳା ଲହଡ଼ା ପିନ୍ଧିଛି ଅନୁ-ରାଧାର ଶ୍ରେଷ୍ଠ ମନ ବେଳା ଉପରେ । ନରୋତ୍ତମ ଭିଡ଼ି ଠିଆ କରାଇ ଦେଲ୍ । ଆପଣାର ଛାତି ଉପରକୁ ଆଉଜାଇ ନେଲ୍ । କୁଞ୍ଜ କାନରେ ଅନୁର ଆଖି ଦଇଟାକୁ ପୋଛି ପକାଇ କହିଲ୍—ଛି, ଅନୁ, କାନ୍ଦନା ମୁଁ ନିଶ୍ଚେ ତୋ ବାପାଙ୍କୁ ଖୋଜି ବାହାର କରିବି’ ।

ଆସ୍ୱସ୍ଥ ହୋଇ ରାଧା ଦୀର୍ଘନିଶ୍ୱାସ ଟାଣୁଚି । ମୁଣ୍ଡ ଉପରୁ ମୁକୁଳା ବେଣୀଟି ପିଠି ଉପରକୁ ଓହଳି ପଡ଼ିଚି । ମୁଣ୍ଡ ଉପରେ ହାତ ବୁଲାଇ ନରୋତ୍ତମ ପ୍ରବୋଧ ଦେଉଚି । ଦୁଃଖ ଭିତରେ ବି ଅନୁ ଅଜ୍ଞାତ ଆନନ୍ଦର ପରଶ ଅନୁଭବ କରି ବିଭୋର ହୋଇ ପଡ଼ୁଚି । ଏମିତି ଅନେକ ବେଳ ଗଲ୍ । ପଦ୍ମବାସିନୀ ଦୂରରେ ଅଦୃଶ୍ୟ ଭାବେ ଛିଡ଼ାହୋଇ ଏ ଦୃଶ୍ୟ ଦେଖି ମନେମନେ ଭାବୁ-ଚନ୍ତି—କେଡ଼େ ସୁନ୍ଦର ଝିଅଟି, ନରୋତ୍ତମଟିକ ଖାସା ମାନୁଚି । କାହିଁକି ବିଧାତା ଆଣି ଯୁଟାଇଲ୍, କଅଣ ତା ମନରେ ଅଛି କେଜାଣି !

× × × ×

କଅଣ ତା ମନରେ ଅଛି କେଜାଣି ! ଲୋକ ଫେରି ଆସିଲ୍ । ଭାଇ ଭଉଣୀ ଦହଙ୍କ ଭିତରୁ କେହି ହେଲେ ଆଜଯାକେ ଗାଁରେ ପହଞ୍ଚି ନାହାନ୍ତି । ଗାଁରୁ ଦଜଣ ପଡ଼ୋଶୀ ଆସିଚନ୍ତି ଝିଅଟିକ ଦେଖି ଯିବାକୁ । ନେଇ ଯିବାକୁ କେହି ଆସି ନାହାନ୍ତି । କିଏ ଏଡ଼େ ବଡ଼ ଦାୟିତ୍ୱଟା ମୁଣ୍ଡକୁ ନେଉଚି ?

ପଦ୍ମବାସିନୀ ସେମାନଙ୍କୁ ଆଦର କରି ରଖାଇଲେ । ଗାଉଁଲି ହିସାବରେ ରାଧା ତାଙ୍କ ଭିତରୁ ଜଣକୁ ଡାକେ ଡମା ଦାଦା

ବୋଲି, ଆଉ ଜଣକୁ ଡ଼ାକେ ସାଙ୍ଗଟି ପିଇସା । ହପ୍ତେଁ ଯାକ ଅଜାଡି । ରାଜଗୁରୁଙ୍କ ପ୍ରତି ମମତା ଥିବାରୁ ବାରକୋଶ ବାଟ ଧାଇଁ ଆସିଚନ୍ତି । ସେମାନଙ୍କୁ ଦେଖି ରାଧା କଥଞ୍ଚିତ ଆଶ୍ୱସ୍ତ ହେଲା । ସେମାନେ ବୁଝାଇଲେ—'ହେଇଛି ଝିଅ, ଆଇଙ୍କ ଘରେ ତୁ ମହା ଆନନ୍ଦରେ ଅଛୁ । ରଜା ଘର ପରି ଘର, ମାଆଙ୍କର ଏତେ ଆଦର । କାହିଁକି ବ୍ୟସ୍ତ ହେଉଚୁ ? ରାଜଗୁରୁ ଫେରିଲେ ଆମେ ନିଶ୍ଚେ ଖବର ଦେବୁ । ସେ'ତ ତୋତେ ହଜାଇ କେଉଁ ଆଡ଼େ ବୁଲୁଚନ୍ତି ତାର ଠିକଣା ନାହିଁ । ହେଲେ ଭଗବାନ ନିଶ୍ଚେ ସେ ଦୁହିଁଙ୍କି ତୋ ପାଖକୁ ଫେରାଇ ଆଣିବେ । ଦମ୍ଭ ଧ ! ବ୍ୟସ୍ତ ହଅନା ମା । ଆମେତ ଦେଖି ଯାଉଚୁ । ଦିନ କେଇଟା ଯାଉ । ଆମେ ଫେରେ ବୁଲି ଆସିବୁ ସେ' !

ରାଧା କହି ଉଠିଲା—"ଆସିବ ଦାଦା, ଆସିବ ନିଶ୍ଚେ ପିଇସା । ବାପା କି ନାନି ଫେରିଲା ମାତ୍ରେ ପଠାଇ ଦବଟିକି ? ମୋ ରାଣ, ମୋ ରାଣ, ମୋ ମୁଣ୍ଡକୁ ସାତ ଥର ଖାଇବଟି" ।

ହସୁଚନ୍ତି ପଦ୍ମବାସିନୀ । କହିଲେ—"କଲୋ ମା ଗାଁ ପିଇସା, ଗାଁଉଳି ଦାଦା ପାଇଁ ଏତେ ରାଣ ନିୟମ, ଆଉ ମୁଁ ? ମୁଁ ତୋର କଅଣ କେହି ନୁହେଁ ? ମୁଁ ପରା ତୋତେ ଝିଅ କରିଚି" ।

ଆଖିଲୁହ ପୋଛୁଁ ପୋଛୁଁ ହସି ହସି ପଦ୍ମା ପାଖକୁ ଲାଗି ଆସିଲା ଅନୁରାଧା । କୋଳକୁ ଉଡ଼ି, ଗୁଣ୍ଡିକି ଆଉଜାଇ, ମୁଣ୍ଡରେ ହାତ ବୁଲାଇବାକୁ ଲାଗିଲେ ପଦ୍ମା । ସେ ବଡ଼ ଛୁଆ ରଙ୍କ ! ସଂସାରରେ ପୁଅଟି ଛଡ଼ା ତାଙ୍କର ଆଉ କେହି ନାହିଁ । ଅନେକ

ଅନେକ ସମ୍ପତ୍ତି । ବୁଢ଼ାସୁଢ଼ା କରିବାକୁ ବହୁତ ଲୋକ ଅଛନ୍ତି ମାତ୍ର ସ୍ୱାମୀ ଅନେକ ଦିନରୁ ବିଦାୟ ହୋଇ ଯାଇଚନ୍ତି । ନରୋତ୍ତମଟି ଏକମାତ୍ର ଅନ୍ଧର ଲଉଡ଼ି ।

ରାଧାର ମୁଣ୍ଡ ଉପରେ ଅଙ୍ଗୁଳି ବୁଲାଉ ବୁଲାଉ ପଦ୍ମା ମନେ ମନେ ଗୁଣି ହେଉଚନ୍ତି—ସତେ କଅଣ ଭଗବାନ ଅନୁଟିକି ଆଣି ଯୁଟାଇ ଦେଇଚ ମୋର ନରୋତ୍ତମ ପାଇଁ ?

ହସି ହସି ଆନନ୍ଦିତ ମନରେ ମୁଣ୍ଡିଆ ମାରି ବିଦାୟ ନେଲେ ଉମେଇ ଆଉ ସାଉଁଟି । ଅନୁରାଧା ତାଙ୍କର ଗଲି ବାଟକୁ ଏକ ଲୟରେ ଅନାଇ ରହିଚ, ଗାଁର ମାୟା । ପିଲାଟି ଦିନୁ ଚିହ୍ନା ପରିଚୟ । ଆପଣାର ପରି ଡ଼କା ହକା—ଦାଦି, ପିଇସା, ଖୁଡ଼ୁତା, ଭାଇ, ମଉସା । ସାନ ପିଲାର ମନ ଭିତରେ ସେମାନେ ପର ନୁହନ୍ତି । ଅତି ଆପଣାର । ନୋହିଲେ ସେମାନେ ଏତେ ବାଟ ଧାଇଁ ଆସି ନଥାନ୍ତେ । ସଂସାରରେ ଆପଣାର କିଏ, ପର କିଏ ? ଆପଣାର କରିନେଇ ପାରେ ଯିଏ ସେଇ ଏକା ଆପଣାର ।

ସାନ ଓଠରେ ହାତ ଦେଇ ମୁହଁଟିକି ଉପରକୁ ଟେକି ଧରି ପଦ୍ମା ପଚାରିଲେ—"ମୁଁ କଅଣ ସତରେ ତୋର କେହି ନୁହେ ଅନୁ" ?

ଆନନ୍ଦରେ ଅଧୀର ହୋଇ ଉଠୁଚି ଅନୁ । ଆତ୍ମହରା ହୋଇ ପଡ଼ୁଚି, ହସି ଉଠୁଚି, ଦିଆଖିରୁ ଆନନ୍ଦାଶ୍ରୁ ବହିଯାଇ ଆସୁଚି । ଉପରକୁ ଆଖିଟେକି ଚାହୁଁଚି, ଦିହାତରେ ପଦ୍ମାଙ୍କୁ ଭୁଣ୍ଡାଇ ପକାଉଚି ।

ଦୂରରେ ଠିଆ ହୋଇ ନରୋତ୍ତମ ସେ ଦୃଶ୍ୟ ଦେଖି ବିହ୍ୱଳ ହୋଇ ଉଠୁଚି । କହୁଚି—'ହେଇ ଲୋ, ଏଇକ୍ଷଣି କାନ୍ଦୁଥିଲା । ହସିଲାଣି । କାଲିକି ତ କଳକଳରେଇ ଉଠିବ ଅନୁ' !

ଅନୁ ମୁହଁ ବୁଲାଇ ନରୋତ୍ତମ ଆଡ଼କୁ କଟମଟ କରି ଅନାଇଲା । 'ମୁ ରୁକି ମୁ ରୁକି ହସୁଚି । ହସୁଚି ଲୋ ହସୁଚି ।'

ଅନୁ ମୁହଁ ଫୁଲାଉଚି, କିନ୍ତୁ ହସି ପକାଉଚି । ନରୋତ୍ତମ ତାଳି ମାରି ପାଖକୁ ଘୁଞ୍ଚି ଆସି ଅନୁର ମୁହଁ ଆଡ଼କୁ ଅନାଇ ରହୁଚି । ବୁଢ଼ୀଯାକ ଏକାବେଳକେ ହସି ପକାଉଚନ୍ତି ।

ପଦ୍ମବାସିନୀ ଆନନ୍ଦରେ ଅଧୀର ହୋଇ ପଡ଼ୁଚନ୍ତି । ଭିତରେ ଭିତରେ ପୁଣି ନିରାଶାରେ ଦୀର୍ଘ ନିଃଶ୍ୱାସଟିଏ ଟାଣିନେଇ ମନେ ମନେ କହୁଚନ୍ତି—'କଅଣ ସେ ବିଧାତାର ଇଚ୍ଛା କିଏ ଜାଣିଛି' !

ଆଶାରେ ନିରାଶା । ହସ ପଛକୁ ଦୀର୍ଘଶ୍ୱାସ ।

ଅନୁ କିଛି ବୁଝି ପାରୁନାହିଁ । ନରୋତ୍ତମ ପଳାଇ ଯାଉଚି । ଖାଇବାକୁ ଡାକି ନେଉଚନ୍ତି ପଦ୍ମବାସିନୀ—'ଆସରେ ବୁଢ଼ୀଯାକ ଖାଇବ ।'

ଦିନ ଗୁଡ଼ାଏ ଭିତରେ ଅନୁରାଧାର ରୂପରେଖ ବଦଳି ଗଲାଣି । କେବଳ ରହି ରହି ମନ ଭିତରେ ଘୋଳ ଖାଉଚି—ବାପା ଗଲେ କାହିଁ, ନାନୀ କୁଆଡ଼େ ଗଲା ! ସମୁଦ୍ରରେ ସମୁଦ୍ର ଉପରେ ସାନ ବଡ଼ ଡଙ୍ଗାଖଣ୍ଡି ତରି ଏକାଠି ଲାଗି ଲାଗି ଭାସି ଯାଉଥିଲେ । ତୋଫାନ ଆସି କାହାକୁ କୁଆଡ଼େ ଅନ୍ତର କରି ନେଲା । ତାର ଖବର ଜାଣେ କେବଳ ଜଣେ ।

ନରୋତ୍ତମ ଉଚ୍ଚ ଶିକ୍ଷାଲାଗି ଦୂରରେ ଥାଏ । ଖବରକାଗଜକୁ ଖବରଟା ପଠାଇଦେଲା—"ଦ୍ରବ୍ୟସିଂହ ରାଜଗୁରୁ ଜାଣିବେ—ଆପଣ ଏବଂ ଆପଣଙ୍କ ଭଉଣୀ କେଉଁଆଡ଼େ ଖୋଜ ବୁଲୁଚନ୍ତି, ଫେରି ଆସନ୍ତୁ । ଆପଣଙ୍କ ଝିଅ ଅନୁରାଧାକୁ ଆମେ କୋଣାର୍କ ମନ୍ଦିରରେ ଏକୁଟିଆ ପାଇ ଆମ ଘରକୁ ଘେନି ଆସିଚୁ । ବୋଉଙ୍କ ପାଖରେ ସେ ଭଲରେ ଅଛି । ଆମ ଘରକୁ ଆସି ଆପଣ ତାକୁ ନେଇଯାଆନ୍ତୁ" । ଇତି ।

ନରୋତ୍ତମ ପ୍ରଧାନରାଜ
ମୁକୁନ୍ଦପୁର ।



# ତିନି

ଭାରତର ଜନସମୁଦ୍ର ଭିତରେ କିଏ ଗୋଟିଏ ହଜିଗଲେ ସହଜେ ମିଳିବାର ଆଶା ନାହିଁ । କିନ୍ତୁ ଯେଉଁଠି ହଜିଲେ ବି ଖୋଜି ନେଇ ପାଖରେ ରଖିବା ପାଇଁ ମଣିଷ ଅଛନ୍ତି । ପାଖରେ ସାମାନ୍ୟ କିଛି ପଇସା ଥିଲା । ସେତିକି ସମ୍ବଳ ରୂପେ ଧରି ଘରକୁ ନ ଫେରି ଦିବ୍ୟସିଂହ ରାଜଗୁରୁ ପୁରୀଆଡ଼େ ଚାଲିଗଲେ ଖୋଜି ଖୋଜିକା । ଗାଁକୁ ଗାଁ ଘରକୁ ଘର, ବାଟଯାକ ପଚାରି ପଚାରି ଚାଲି ଯାଆନ୍ତି । ମଠବାଡ଼ି ଓ ଠାକୁର ମନ୍ଦିରରେ ଖାଇବାକୁ ଗଣ୍ଡିଏ ମିଳିଯାଏ । ପୁରୀରେ ପହଞ୍ଚି ବାଇ ବାତୁଳ ଭଳି ଏଣେ ତେଣେ କିଛିଦିନ ସେ ଖୋଜିଲେ । ଶେଷକୁ ଦିନେ ପୋଲିସ ଥାନାକୁ ଯାଇ ହୁଲିଆ କରିବାକୁ ବସିଲେ । ଥାନାବାବୁ ଖବର କାଗଜ ଖଣ୍ଡିକ ଆଣି ଦେଖାଇ ଦେଇ କହିଲେ—'ହେଇଟି ଟହା ରାଜଗୁରୁ, ତମ ଝିଅଟି ମୁକୁନ୍ଦପୁର ଗାଁରେ ପ୍ରହରାଜଙ୍କ ଘରେ ଅଛି । ସମୁଦ୍ର କୂଳେ କୂଳେ ସାତ ଆଠ କୋଶ ବାଟ ଗଲା ପରେ ଉତ୍ତରମୁଖା ସଡ଼କ ପଡ଼ିବ, ଓଳିକରି ବାଟ । ଧନୀଲୋକ ଘର, ଖାନଦାନ, କିଛି ଭୟ ନାହିଁ । ଝିଅଟି ଭଲରେ ଥିବ ନିଶ୍ଚେ' ।

ଦୀର୍ଘନିଃଶ୍ୱାସ ଛାଡ଼ି ରାଜଗୁରୁ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ମୁଣ୍ଡି ଆଟିଏ ମାରି କହିଲେ—'ପ୍ରଭୁ ହେ, ତୁଇ ବଡ଼ଲୋକ' । କିନ୍ତୁ

ପର ମୁହୂର୍ତ୍ତରେ ପୁଣି ଗୋଟିଏ ଗହ୍ୱାଡ଼ିଆ ନିଶ୍ୱାସ ଟାଣି କହି ଉଠିଲେ – 'କିନ୍ତୁ ବାବୁ, ମୋ ନାତିଟି କୁଆଡ଼େ ଗଲା ?'

'ନାମ—ବୁଢ଼ୀ ମନୋରମା । ବୟସ ପଞ୍ଚାବନ ଉପରେ, ବର୍ଣ୍ଣ ଗୋରା । ବିଧବା, ଖଣ୍ଡେ ଛେଦା ଧୋତି ପିନ୍ଧିଛି' ।

ଦାରୁଗା ବାବୁ କହିଲେ—'ଆଗ ଝିଅଟିର ସନ୍ଧାନ ପାଇଲେ, ତାକୁ ନେଇ ଆସ । ବୁଢ଼ୀଙ୍କ ପାଇଁ ଏତଲାଟା କରିଯାଅ । ତେଣିକି ଦେଖାଯିବ' ।

'ହଉ ଆଜ୍ଞା' ।

ଥାନା କାମସାରି ରଜଗୁରୁ ବାହାରିପଡ଼ିଲେ ବଜାରଆଡ଼େ । ମନ ଚଞ୍ଚଳ ଧରିଲାଣି । ପନ୍ଦର କୋଡ଼ିଏ ଦିନ ହେଲା ଖୋଜି ଖୋଜି ନୟାନ୍ତ ହେଲେଣି । ଆଜି ଯେମିତି ହେଉ ମକୁନ୍ଦପୁରରେ ପହଞ୍ଚିବାକୁ ହେବ । କିନ୍ତୁ କେମିତି ? ହାତରେ ତ ଗୋଟିଏ ହେଲେ ପଇସା ନାହିଁ !

ପାଗଳପରି ଗୁଲିଚନ୍ତି ରଜଗୁରୁ କାହାକୁ କିଛି ମାଗିବେ । କିନ୍ତୁ କିଏ ଦେବ ? ଯିଏତ ଦେଖୁଛି ସିଏ ଭାବୁଛି ଇଏ ଗୋଟିଏ ପାଗଳ । ମୁହଁରେ ଦାଢ଼ି ନିଶ ଏଣ୍ଡୁଟାମାନ, ମୁଣ୍ଡ ବାଳତକ ନୁଖୁରା ଫୁରୁ ଫୁରୁ । ଦିହର ଲୁଗା ଜାମା ଦିଖଣ୍ଡି ମଇଳା, ମୁଣ୍ଡ ଠିକ୍ ନାହିଁ । କାହାକୁ ଯେ କଅଣ ସେ କେତେବେଳେ କହି ପକାଉଚନ୍ତି ତାର ଠିକଣା ନାହିଁ । ଦିନଯାକ ଏଣେତେଣେ ବୁଲି ମଠବାଡ଼ରେ ଠିଆ ହୋଇଗଲେ ଗଣ୍ଡିଏ ପ୍ରସାଦ ମିଳିଯାଉଚି ଏବଂ ସଞ୍ଜସରିକି କୌଣସି ଯାତ୍ରାଘର ପାଖରେ ନକୁଟି ହେଲେ ଟେକାଏ ଅଧେ ଘୋଟା ଭାଙ୍ଗ ଯୁଟିଯାଉଚି । ସେତିକରେ ରାତିଟି ଅଜ୍ଞାନ ଏବଂ ଦିନ ସାରା ଭୁଲ

ମାଡ଼ୁଚ । କୌଣସି ପ୍ରକାର ନିଜକୁ ଭୁଲାଇ ରଖିବାକୁ ହେବ । ଦୁଃଖ ଦୈନ୍ୟର ଗୁରୁଭାର ହାଲୁକା' କରିବା ପାଇଁ ସଂସାରରେ କେହି ନାଲିପାଣିର ଆଶ୍ରୟ ନେଉଛି, କେହି ଅବା ଭାଙ୍ଗପାଣି ଅନୁସରଣ କରୁଚ । ଦୁନିଆରେ ସମସ୍ତଙ୍କର ଦୁଃଖ ଅଛି ଅଳ୍ପେ ବହୁତେ । ରାଜଗୁରୁଙ୍କ ସଂସାରରେ ସ୍ତ୍ରୀ ମଲ୍‌ଦିନୁ ଦୁଃଖର ମାତ୍ରା ବଢ଼ି ବଢ଼ି ଚାଲିଚ ସିନା କମୁନାହିଁ । ହତାଶା ଓ ଗୁରୁବୋଝ ତଳେ ଅହରହ ଚାପି ହୋଇ ପଡ଼ି ଦୁଃଖ କଷ୍ଟ ଭୁଲିବା ପାଇଁ ସେ ଆଜି କଅଣ କରନ୍ତେ ?

ହଠାତ୍ ଖିଆଲ ପଶିଲା । ଅଛି, ଅଛି, କିଛି ଅଛି, ଡାହାଣ ହାତର ଆଙ୍ଗୁଠିରେ ଗୋଟିଏ ପାତଳ ସୁନା ମୁଦି ଅଛି । ଭଗବାନ ହେ ! ତୁମକୁ ଏଇଥି ପାଇଁ ଦୟାମୟ ବୋଲି କହୁଥାଆନ୍ତି । କେତେ ବଳ ଆସିଗଲା ମନରେ । ମଣିଷର ସବୁ ବଳ ଭିତରେ ଧନ ବଳଟା ହିଁ ପ୍ରବଳ । ଧନ ପାଖରେ ଥିଲେ ସବୁଠି ଚଳିଯାଇ ହେବ । ସିଧା ସଳଖ ବଜାରକୁ ଚାଲିଲେ ରାଜଗୁରୁ । ବଣିଆ ଦୋକାନରେ ମୁଦିଟିକ ବିକିବେ । କିଛି ପଇସା ସଂଗ୍ରହ କରିବେ ଏବଂ ମୁକୁନ୍ଦପୁର ଉଦ୍ଦେଶ୍ୟରେ ଯାତ୍ରା କରିବେ । ଦେହରେ ଶକ୍ତି ନାହିଁ, ହୁଏତ ଗାଡ଼ି ଶଗଡ଼ ଯାଉଥିବ, ତାର ଆଶ୍ରା ନେବେ ।

କିନ୍ତୁ ନାମା ?

"ଇରେ ସିଂହ ! ଇରେ ମୋ ସିଂହ" ।

ଗହଳି ବଜାର ଭିତରେ ପଛରୁ କିଏ ଡାକ ଉଠୁଚ । "ଇରେ ମୋ ସିଂହ" !

ବୁଢ଼ୀ ମନୋରମା । ଜୀର୍ଣ୍ଣ ଶୀର୍ଣ୍ଣ ଦେହ, ମଳିନ ଲୁଗାଖଣ୍ଡିକ, ଚାଲିଲା ବେଳକୁ ଥୁରୁ ଥୁରୁ ଥରି ଉଠୁଚ । ଅନେକ ଉପାସରେ ବାଇ

ଦୁଆରେ ବୁଲି ବୁଲି ପୁଣି ସହରରେ ଖୋଜୁଚନ୍ତି ଘର ଓ ଝିଅମାନଙ୍କ ।

"ଇରେ ମୋ ଅନୁ କାହିଁ ? ମୋ ରାଧା କାହିଁ" !

ଆଗେଇ ଆସି ଧରି ପକାଇଲେ ଦିବ୍ୟସିଂହ ହାତଟାକୁ । କାନ୍ଦ ପକାଉଚନ୍ତି ।

"ଅଛନ୍ତି ଲୋ ନାନୀ, ଅଛନ୍ତି । ଝିଅ ମୋର ଭଲରେ ଅଛନ୍ତି" ।

ହାତ ଦଟାକୁ ଯୋଡ଼ିଦେଇ ଊର୍ଦ୍ଧ୍ୱକୁ ଟେକି ଧରି କହି ଉଠିଲେ ବୁଢ଼ୀ—"ହେ ଜଗବନ୍ଧୁ ତୁଇ ସାହା, ତୁଇ ବଡ଼ଲୋକ । ତୁଇ ସମସ୍ତଙ୍କର ଆଶ୍ରା" ।

ସିଂହ ଉଦ୍ଦେଶ୍ୟରେ ପଚାରିଲା ବୁଢ଼ୀ—"କୋଉଠି ଅଛି ମୋ ଝିଅ କହିବୁଟି ଧନ" ।

"ଅଛନ୍ତି ଲୋ ନାନୀ, ଭଲରେ ଅଛନ୍ତି । ମୁକୁନ୍ଦପୁର ଗାଁରେ ପଦ୍ମବରଙ୍କ ଘରେ । ଆଜି ମୁଁ ବାହାରିଚି ତା ପାଖକୁ, ଏଇନେ ଯିବି" ।

"ତୁ କେମିତି ଜାଣିଲୁ ? ଦେଖି ଆସିଚୁ ମୋ ରାଣୀଟି" ?

"ଦେଖିନାହିଁ ଖବରକାଗଜରେ ବାହାରିଚି । ଥାନାବାଲା କହିଲେ । ଯାଉଚାର ଏଇକ୍ଷଣି । ଏତେ ବିକଳ ହେଲେ କଅଣ ହବ ! ତୁ କୋଉଠି ଅଛୁ କହତ" ।

ବୁଢ଼ୀ ହାତଠାରି ଦେଖାଇ ଦେଲା—"ହେଇଟି ସେ ଗଙ୍ଗାମାତା ମଠରେ ପଡ଼ିଚି । ହଉ ଚାଲ, କଅଣ ଖାଉଚୁ ? ଗାଧୋଇଲୁଣି" ?

'ହଁ,ହଁ କେତେ ଫଟେଇ ହଉଚି' । ମୁଁ ତର ତର ହେଲି-ବେଳକୁ ଇଆର ଏତେ କେଉଁ ଚାଲିଚି ।

ତରକ୍ତ ହୋଇ ପଡ଼ିବେଣି ବଜରୁ ରୁ ।

"ହଉ ହଉ, କୁଆଡ଼େ ତୁ ଯାଉଚୁ ଯା ମୁଁ ଏଇଠି ବସିଚି । ଫେରି ଆସିବୁ, ମଠରେ ପ୍ରସାଦ ପାଇବୁ, ତେବେଯାଇଁ ଯାତ୍ରା କରିବୁ" ।

ବିରକ୍ତରେ ବଜାର ଭିତରକୁ ପଶି ଯାଉ ଯାଉ ଦିବ୍ୟସିଂହ କହିଲେ—"ତୁ ଚାଲ ଗଙ୍ଗାମାତା ମଠକୁ, ମୁଁ ଫେରି ଆସୁଚି । ମୁଁ ଆସିଲାଯାଏ ତୁ ଆଉ କୁଆଡ଼େ ଯିବୁନାହିଁ । ସେଇ ମଠରେ ଅପେକ୍ଷା କରିଥିବୁ" ।

"ହଉ" ।

ବୁଢ଼ୀ ଫେରିଲା ।

ଦିବ୍ୟସିଂହ ବଜାର ଭିତରକୁ ଗଡ଼ିଲେ ।

ବଣିଆ ଦୋକାନରେ ମୁଦିଟିର ବିନିମୟରେ କୋଡ଼ିଏ ଟଙ୍କା ହାତକୁ ଆସିଲା ।

ଯୋଡ଼ିଏ ଟଙ୍କା ନେଇ ଖୋଲା ଶଗଡ଼ଟା ରାଜଗୁରୁଙ୍କୁ ପୁରୀଠାରୁ ବସାଇ ଆଣି କଟରା ଗାଁର ଟାଉଁପୁନାଗ ବଣପାଖ ଛକ ଉପରେ ଛାଡ଼ିଦେଇ ଗଲା । ଏଇଠୁ ଉତ୍ତରମୁଖା ଓଲକର ବାଟ ମୁକୁନ୍ଦପୁର । ରାତି ସେତେବେଳକୁ ପହରେ ହେବ । ଗାଁ ଏକପ୍ରକାର ଶୂନ୍‌ଶାନ୍ ହୋଇ ଗଲାଣି । କାଁ ଭାଁ ଜଣେ ଅଧେ ଚାଲିଚନ୍ତି । ଛକ ଉପରେ ଗୋଟିଏ ଛୋଟିଆ ଗୁଡ଼ିଆ ଦୋକାନ । ଭିତରେ ଆଲୁଅଟିଏ ମିଞ୍ଜି ମିଞ୍ଜି ହୋଇ ଜଳୁଚି । ଦୋକାନ କଡ଼କୁ ହଣା ହୋଇଥିବା ପଇଡ଼ ଖୋଳର ଜୁଡ଼ । ଅଦୂରରେ ଭେଇ ସାହି, ଧୂମ୍ରର ମାଡ଼ ଚାଲିଚି । ସାରା ଦିବସର କର୍ମକ୍ଳାନ୍ତି ପରେ ବିରାମ ଦାୟିନୀ ସନ୍ଧ୍ୟାରାଣୀର ବିପୁଳ ଆଗମନ କ୍ଳାନ୍ତଶ୍ରାନ୍ତ ଦରିଦ୍ର ପ୍ରାଣରେ ଆନନ୍ଦ ଉତ୍ସାହର ଉଦ୍ଦୀପନା ପୂର୍ଣ୍ଣ ମାତ୍ରାରେ ସଞ୍ଚାର କରି ଦେଇଚି । କିନ୍ତୁ

ମାଦଳ ଏବଂ ତା ପଛକୁ ଘୁମୁର ମାଡ଼—ତାଳ, ମାନ ଓ ଲୟ ଠିକ୍ ଅଛି । ବାଦ୍ୟ ସାଙ୍ଗକୁ ଧୀରେ ଧୀରେ ରହି ରହି ମଧୁର ସଙ୍ଗୀତ:—
‘ଆହେ, ଚକାଡ଼ୋଳା’ ।

ସରଳ ସଙ୍ଗୀତ ଓ ବାଦ୍ୟ ମଧୁରରେ ସରଳ ପଲ୍ଲୀପ୍ରାଣ ଅମୃତମୟ ହୋଇ ଯାଇଚି । ରାଜଗୁରୁ ଧୀରେ ଧୀରେ ଦୋକାନ ଆଡ଼କୁ ଗଲେ । ପଚାରି ବୁଝିଲେ, ଖଇ ଉଖୁଡ଼ା ଛଡ଼ା ଆଉ କିଛି ଖାଇବାକୁ ମିଳିବ ନାହିଁ । ହୁଏତ ଖୋଜିଲେ ଦୁଧ ଦହି ମିଳିପାରେ । ଚୂଡ଼ା ମିଳିବ, କଦଳୀ ବି ମିଳିପାରିବ ।

ରାଜଗୁରୁ ଅଣ୍ଟାରୁ କିରାଟଟିଏ ବାହାର କଲେ । ଶୁଖିଲା ବଟା ଚେଲାଟିଏ ଫିଟାଇ ନେଇ ପାଟିରେ ପକାଇଲେ । ସେଇଟି ହେଲା ତାଙ୍କର ଜୀବନ । ତା ପରେ ଖୋଜାଖୋଜି କରି ଯାହା ମିଳିଲା କିଛି ଖାଇ ପାଣିମୁନ୍ଦାଏ ପିଇ ପାଖରେ ଥିବା ମହାଦେବ ମନ୍ଦିରର ମଣ୍ଡପ ଉପରେ ନଡ଼ିଆ ପତ୍ର ଖଣ୍ଡିକ ପାରି ଶୋଇ ପଡ଼ିଲେ । ରାତିଟି ପାଇଁ ଅଜ୍ଞାନ । ଅଜ୍ଞାନ ଥିଲେ ହିଁ ମଣିଷ ନିଶ୍ଚିନ୍ତ ଥାଏ । ଜ୍ଞାନଥିବା ବେଳଯାଏକ ମଣିଷ ଚିନ୍ତାଗ୍ରସ୍ତ ହୋଇ ଧନ୍ଦି ହେଉଥାଏ ।

‘ଗୃହାରମ୍ଭାସ୍ତୁ ଦୁଃଖାୟ,
ନ ସୁଖାୟ କଦାଚନ’ ।

ସେଇଥିପାଇଁ ସନ୍ନ୍ୟାସୀମାନେ ସଂସାର ତ୍ୟାଗ କରନ୍ତି । ସାଧନ ବଳରେ ଦୈବୀଶକ୍ତି ନିକଟରେ ପୂରାପୂରି ଆତ୍ମୋତ୍ସର୍ଗ କରିଦିଅନ୍ତି । ଦୁଃଖର ସାଗରରୁ ମୁକ୍ତ ହେବାପାଇଁ ସାଧନର ତରି ଧରି ସଜ୍ଞାନରେ ଅଜ୍ଞାନତା ଲାଭ କରନ୍ତି । ଜ୍ଞାନାଞ୍ଜନର

କୁଜ, କାଆ କାଆ, ଚୁହୁ ଚୁହୁ, ବିଭିନ୍ନ ପକ୍ଷୀଦଳ ଚଳନ୍ତି ଝେଟପଟ ପର ଘସିଘସି ଉଡ଼ି ଯାଉଚନ୍ତି ରକ୍ତିମ ଆକାଶରେ । ଜମନ୍ତା ପଲ୍ଲୀ ଚିତ୍ର ଉପରେ ଅଭିନବ ଚିତ୍ରକରର ଅଦୃଶ୍ୟ ତୁଳିକା ସଞ୍ଚାଳିତ ହୋଇ ମୁହୂର୍ତ୍ତକ ପରେ ଗୋଟିଏ ଗୋଟିଏ ନୂଆ ଚିତ୍ରପଟ ଆଙ୍କି ଦେଇ ଯାଉଚି । ପଲ୍ଲୀବଧୂ ଗାଁ ଦାଣ୍ଡ ଓଳାଇବାକୁ ଲାଗିବେଣି । ଗୋଟି ଗୋଟି ହୋଇ ଗାଡ଼ି ଶଗଡ଼ ଗଳୁଚନ୍ତି ରାସ୍ତା ଉପରେ । ନୂତନ ଦିନଟିର ଆଗମନୀ ଲାଗି ସ୍ବର ଆଡ଼େ ମାଙ୍ଗଳିକ ଧ୍ୱନି ଉଚ୍ଛୁଳି ଉଠିଲାଣି । ରାଜଗୁରୁ ଚାଲିଲେ ଉତ୍ତର ମୁହାଁ । ଗହିର ବିଲ ବାଲିପନ୍ତାର, ଛୋଟ ଛୋଟ ନାଳୀ ଝୋଡ଼ ଏବଂ ସାନ ସାନ ଗାଁଅଟିମାନ ମନରେ ମହକ ଲଗାଇ ଦିଏ । ଚାହିଁ ରହିବାକୁ ଆଖିରେ ଚଟକ ଲାଗିଯାଏ କିନ୍ତୁ ଝିଅଟି ପାଇଁ ମନ ବ୍ୟାକୁଳ । ଗାଧୁଆ ପାଧୁଆ ଖିଆ ପିଆ ଭୁଲି ଯାଇଚନ୍ତି ରାଜଗୁରୁ । ମାଆ ଛେଉଣ୍ଡ ଝିଅଟି—ଅନୁରାଧା । କୋଡ଼ିଏ ଦିନ ହେଲା ଚାହିଁ ରହିଥିବ । ଖିଆ ପିଆ ଛାଡ଼ି ଦେଇ ଥିବ । ହଡ଼ି ଯିବଣି । କଣ୍ଢା ହୋଇ ଯିବଣି ! ସବୁ ତାର ଯିବଣି ! କେବଳ ଆଖି ଯୋଡ଼ିକରେ କୁହୁକୁହୁ ହୋଇ ଚାହିଁ ରହିଥିବ, ବାପ ଆସିବ ବୋଲି ବାଟ ଆଡ଼କୁ ।

'ଇଲେ ମୋ ବାପା ଅଇଲେଣି',

ପଦ୍ମା ଦାଣ୍ଡ ପିଣ୍ଡା ଉପରକୁ ଧାଇଁ ଆସିଲେ 'ହେଇଟି ବୋଉ, ବାପା' ଅଇଲେଣି ।'

ବାପା ! ଅନୁରାଧାର ବାପା ! ପାଗଳ ବାତୁଳ ମଡ଼ିଆ ଧଡ଼ିଆ, ମଇଳା କୋତରା ରାଜଗୁରୁ !! ଏଇ କଅଣ ଅନୁ- ରାଧାର ବାପା !!

ପାହାଚ ଉପରକୁ ଧୀରେ ଧୀରେ ଉଠି ଆସୁଚନ୍ତି ରାଜଗୁରୁ । ଝିଅ ଧାଇଁ ଆସୁଚି ପାଖକୁ । ଅଧା ବାଟରେ ଠିଆ ହୋଇ ଗୁରୁ ଉପରକୁ ରାଧାକୁ ଆଉଜାଇ ନେଉଚନ୍ତି ରାଜଗୁରୁ । ଦୁଆଖିରୁ ଦୁଧାର ଲୁହ । ପଦ୍ମା ଗୁହାଁଚନ୍ତି । ଭାବୁଚନ୍ତି—ନିହାତି ଗରିବ ବ୍ରାହ୍ମଣଟାଏ, ଗଞ୍ଜୋଡ଼ି ଅଫିମା ପରି ଦିଶୁଚି । ସମ୍ଭ୍ରାନ୍ତ ପଣିଆର ଲେଶ ମାତ୍ର ଚିହ୍ନନାହିଁ । ଶାସନମାନଙ୍କରେ ଏମିତିଆ ମାଗିଖିଆ ବହୁତ ଅଛନ୍ତି ! କିନ୍ତୁ, ଅନୁଟି ?

ଆଉ ଭାବିପାରିଲେ ନାହିଁ ପଦ୍ମବାସିନୀ । ଦୀର୍ଘନିଶ୍ୱାସଟିଏ ଟାଣିଲେ । ବାପ ଆଉ ଝିଅ ଉଭୟଙ୍କ ଆଡ଼କୁ ଥରକୁ ଥର ଅନାଇଲେ; ଅନାଇଲେ ଏବଂ ଭାବି ହେଲେ । ଅନୁଟିକି ମନ ଛାଡ଼ୁ ନାହିଁ । ରାଜଗୁରୁଙ୍କୁ କିନ୍ତୁ ମନଟା ଗ୍ରହଣ କରିପାରୁ ନାହିଁ । ମନ କହୁଚି—କିଛି ନାହିଁ କାଙ୍ଗାଳଟାଏ । ଲୋକେ ହସିବେ । ମୁଁ ସିନା ଭାବିଥିଲି—ଆଉ ଅଧିକ ଭାବି ପାରିଲେ ନାହିଁ ପଦ୍ମବାସିନୀ । ନିଜର ଭୁଲ ହୋଇଚି ଭାବିବାରେ । ମନେ ମନେ ନିଜେ ମରିଗଲେ ସିନା, ମୁହଁ ଫିଟାଇ କାହାରିକି କିଛି କହି ପାରିଲେ ନାହିଁ ।

ବାପା ସେମିତି ଅଧା ବାଟରେ ପଥର ପାହାଚ ଉପରେ ଠିଆ ହୋଇ ରହିଲେ । ଅନୁରାଧା ଧାଇଁଗଲା ପଦ୍ମବାସିନୀ ଆଡ଼କୁ । ପ୍ରାଣଭରା ଆବେଗ ଦେଇ କୁଣ୍ଢାଇ ପକାଇ କହିଲା—'ବୋଉ, ବାପା ଆସିଚନ୍ତି' ।

ପଦ୍ମା ଅନୁକୁ ଛାଡ଼ି ଦୂରେଇ ଗଲେ । ମନ ଭିତରେ କିଏ ଲୁଚିରହି 'ଛିଇ ଛିଇ' କରି ଉଠୁଚି, ମୁହଁଟି ଶୁଖାଇ ପଛକୁ ଲେଉଟି ଆସିଲା ଅନୁରାଧା । ରାଜଗୁରୁ ପିଣ୍ଡା ଉପରକୁ ଉଠି ପାରୁନାହାନ୍ତି, ଅପ୍ରତ୍ୟାଶିତ ଅନଭ୍ୟର୍ଥିତ ଅତିଥି ସେ ।

କିଛି ସମୟ ନୀରବ ଭାବେ ଠିଆ ହୋଇ ରହି ଦୀର୍ଘ ନିଃଶ୍ୱାସ ଟିଏ ଟାଣି ପଦ୍ମବାସିନୀ କହିଲେ—'କହ ଅନୁ, ଉପରକୁ ଆସନ୍ତୁ । ପାଣି ତାଙ୍କେ ଆଣିଦେ ଗୋଡ଼ ଧୋଇବାକୁ, ଦାଣ୍ଡଘର ଭିତରକୁ ଡାକ । ବିଶ୍ରାମ କରିବାକୁ କହ' ।

ବଡ଼ଲୋକଙ୍କର ବଡ଼ ବଡ଼ କଥା । ଘଡ଼ିକେ ଘଡ଼ି ମନ ବଦଳି ପଡ଼େ । ଭାବପ୍ରବଣତାରେ ଭାସିଯାଇ ଏଇକ୍ଷଣି ଯାହାକୁ ନିତାନ୍ତ ଆପଣାର ବୋଲି ଗ୍ରହଣ କରି ନେଲେଣି, ଘଡ଼ିକ ପରେ ତାକୁଇ 'ଛିଇ' ବୋଲି ଗୋଇଠା ମାରି ଦୂରକୁ ଫିଙ୍ଗି ଦେଲେଣି । ମଣିଷ ପଣିଆକୁ ସେଠି ଆଦର ମିଳେ ନାହିଁ । ଧନ ସମ୍ପଦ ଓ ଆଭିଜାତ୍ୟର ସେଠି ବଡ଼େଇଗୁଡ଼ାଲେ । ରାଜଗୁରୁଙ୍କୁ ଦେଖିଲାକ୍ଷଣି ପଦ୍ମବାସିନୀ ଅନୁରାଧାକୁ ଦୂର କରିଦେଲେ, ପର କରିଦେଲେ । ମନେ ମନେ ଭାବି ନେଲେ ଅନାଥା ନିରାଶ୍ରୟା ପିଲାଟିକି ପାଇଆଣି କେଇଟା ଦିନ ସିନା ଆଦର କରିଥିଲେ, ସବୁଦିନ ପାଇଁ ଏଘରକୁ ଘେନି ଆସିବା ପାଇଁ ସେଇଟିର ଆଭିଜାତ୍ୟ ନାହିଁ ।

କାହୁଁ କିଏ ଗୋଟିଏ ଅଭ୍ୟାଗତ ଅଇଲା ପରି ରାଜଗୁରୁଙ୍କ ପ୍ରତି ପୂଜାରୀ ଗୃହର ଯାହାଚର୍ଚ୍ଚା କଲେ ସେତିକ । ଆଉ ଅଧିକ ଆଶା କରିବା ମଧ୍ୟ ରାଜଗୁରୁଙ୍କ ପକ୍ଷେ ଉଚିତ ହୁଅନ୍ତା ନାହିଁ । ଦାଣ୍ଡଘରେ ଚଳ ପ୍ରଚଳ, ଦାଣ୍ଡଆଡ଼େ କାରବାର । ପଦ୍ମବାସିନୀ ଆଉ ଦେଖାଦେଇ ନାହାନ୍ତି । ଦିନଟି ସାରା ଅନୁରାଧା ଛଳ ଛଳ ଆଖିରେ ପଦ୍ମାଙ୍କର ଗମ୍ଭୀର ମୁହଁ ଆଡ଼କୁ ଚାହୁଁଚି, କିନ୍ତୁ ବୁଝିପାରୁ ନାହିଁ କିଛି । ହଠାତ୍ ଏତେ ଦୂର ବଦଳି ଗଲେ !

ବଦଳି ଯାଇଚି ନରୋତ୍ତମର ଚେହେରାଟା । ବୋଉଙ୍କ ଭାବ ପରିବର୍ତ୍ତନ ଦେଖି ସେ ଉପୃଖ୍ୟତ ହୋଇ ଯାଇଚି । ଅନୁରାଧା

ବେଳେବେଳେ ପାଖେଇ ଆସୁଛି । ଛଳଛଳ ଆଖିରେ ଚାହୁଁଛି । ତା ଆଡ଼କୁ ଚାହିଁ ନରୋତ୍ତମର ଆଖି ଛଳ ଛଳେଇ ଆସୁଛି । କେଉଁଠା ଦିନର ମାୟା ! ମନ ଉପରେ କେତେବଡ଼ ଘାଇ ବସେଇ ଦେଇଛି । ବାପା ଆସିଚନ୍ତି ନେବାକୁ । ଅନୁର ମନଟା ଆନନ୍ଦରେ ଉଚ୍ଛୁଳ ଉଠନ୍ତା ସିନା କନ୍ତୁ କାହିଁକି କେଜାଣି ବିକଳ ଲାଗୁଛି ଏଘର ଦ୍ୱାର ଛାଡ଼ି ଯିବାକୁ । ବୋଉଙ୍କ ଚେହେରା ଦେଖିଲେ ଡ଼ର ମାଡ଼ୁଛି । ନରୋତ୍ତମର ମୁହଁ ଆଡ଼କୁ ଅନାଇଲେ କାନ୍ଦ ମାଡ଼ୁଛି । ମନଭିତରୁ ହଜାର ହଜାର ପ୍ରଶ୍ନ ବାହାରି ପଡ଼ିବାକୁ ତଣ୍ଟି ଯାକେ ଆସି ଅଟିକ ଯାଉଛି । ଭାଷା ପାଉ ନାହିଁ ଅଭିବ୍ୟକ୍ତି ପାଇଁ । କନ୍ତୁ କାହିଁକି ?

ସେ ଦିନଟି ରାଜଗୁରୁ ରହିଲେ । ଚିନ୍ତା ତାଙ୍କର ମନରୁ ଏକ ପ୍ରକାର ଦୂର ହୋଇ ଯାଇଛି । ବାଇଁବାଡ଼ୁଳ ପରି ଯେଉଁଝିଅ ଓ ଭଉଣୀକି ସେ କୋଡ଼ଏଟି ଦିନ ଖୋଜି ବୁଲୁଥିଲେ, କୋଡ଼ଏଟି ଦିନ ନୁହେଁତ କୋଡ଼ଏଟି ଯୁଗ, ସେମାନେ ଆଜି ମିଳିଚନ୍ତି । ଭଲରେ ଅଛନ୍ତି । ଚିନ୍ତା ଶୂନ୍ୟ ମନଧେନ ରାଜଗୁରୁ ଗାଁଭିତରୁ ଖୋଜିଉଣ୍ଡି ଝେଲାଏ ମାହା ବଢ଼ାଇ ଦେଇଚନ୍ତି ଆଜି । ବସିଲା ଠେଇଁ ଢୁଳ ମାଡ଼ୁଛି । ଗଡବଧି ଦେଖି ଯାଉଚନ୍ତି ପଦ୍ମବାସିନୀ । ମନ ସ୍ଥିର କରି ଦେଲେଣି । ମନେ ମନେ ଠିକ କଲେଣି—କାଲି ସକାଳୁ କେମିତି ଏ ବାପ ଝିଅଙ୍କୁ ବିଦା କରି ନିଶ୍ଚିନ୍ତ ହେବେ ।

ବିଦା କରି ନିଶ୍ଚିନ୍ତ ହେବେ ପଦ୍ମବାସିନୀ !

ସଞ୍ଜ ମାଡ଼ ଆସୁଛି । ପତଳା ଅନ୍ଧାର ଧୀରେ ଧୀରେ ବହଳ ହୋଇ ଆସୁଛି । ଦିନର ଆଲୋକ ଅନ୍ଧକାରର ରୂପ ନେଉଛି । ବାଡ଼ପଟ ତୋଟା ଭିତରେ ଏକୁଟିଆ ଠିଆ ହୋଇଛି ଅନୁ । କେତେ

ବିନର ମାୟା ! ପୋଖରୀଟିର ସ୍ୱଚ୍ଛ ପାଣି ଉପରେ ପ୍ରକାଶ ତାର ଫୁଲର ପ୍ରତିବିମ୍ବ ନିରେଖି ନିରେଖି ମୁଗ୍‌ଧ ନୟନରେ ଅନାଇ ରହିଚି ଅନୁରାଧା । ନିଜର ଶୁଭ୍ରମୁଖ ଛବିଟିକୁ ଏକଲୟରେ ଘଡ଼ି ଘଡ଼ି ଚାହିଁ ରହିଚି ରାଧା । ଠିକ୍ ପଛକୁ ଠିଆ ହୋଇଚି ନରୋତ୍ତମ । ଦୀର୍ଘ ଶ୍ୱାସ ଟାଣି ଧୀର ସ୍ୱରରେ ଡ଼ାକିଲା—"ରାଧା" !

ପଛକୁ ଫେରି ଚାହିଁଲା—ଅନୁ । କହିଲା—"କିଏ" ? ।

"ମୁଁ" ।

"କଅଣ କହୁଚ" ?

ନରୋତ୍ତମ ଅନୁର ଟିକି ହାତଟିକି ଧରି ପକାଇଲା । କହିଲା—"କାଲି ଯାଉଚୁ" ?

"ଯିବି ନାହିଁ ଆଉ କଅଣ କରିବି" ?

"ବାପାଙ୍କୁ କହି ରହି ପାରିବୁ ନାହିଁ" ?

"କେମିତି ? ବୋଉତ ଆଜି କଥା କହୁ ନାହାନ୍ତି । ଦୂର୍ ଦୁର୍ ଛୁରୁ ଛୁରୁ । ବାପାଙ୍କୁ ଦେଖିଲା ବେଳୁ ବଦଳି ଯାଇଚନ୍ତି । ଆମେ ଗରିବ, ତମେ ବଡ଼ଲୋକ" ।

ଚାଉଁକିନା ଚମକି ଉଠିଲା ନରୋତ୍ତମର ଛାତି ଭିତରଟା । ଗରିବ ଆଉ ବଡ଼ଲୋକ ଭିତରେ ମଣିଷ-ପଣିଆର ମାପକାଠି କଅଣ କିଛି ନାହିଁ ? ସେ ବି ଲକ୍ଷ୍ୟ କରିଚି ଆଜି ବୋଉଙ୍କର ପରିବର୍ତ୍ତନ । ଅନୁ ଓ ତା ବାପାପ୍ରତି ତାଙ୍କର ହଠାତ ଅବଜ୍ଞା ଓ ଅବହେଳା ଭାବଟା ନରୋତ୍ତମର ପସନ୍ଦ ହୋଇନାହିଁ । ମାଆ ଓ ପୁଅ ଭିତରେ ଗୋଟାଏ ଯୁଗର ପରିବର୍ତ୍ତନ । ଆଭିଜାତ୍ୟର ସାମନ୍ତ-

ବାସି ଯୁଗର କର୍ତ୍ତୀ ପଦ୍ମବାସିନୀ, ଆଉ ଆଗତପ୍ରାୟ ସାମ୍ୟବାଦୀ ଯୁଗର ଶିକ୍ଷିତ ଯୁବକ ନରୋତ୍ତମ । ଦୁହିଙ୍କ ମନ ଭିତରେ ଅନେକ ବ୍ୟବଧାନ ।

ଠିକ ହାତଟିକ ଧରିଚି ନରୋତ୍ତମ । କହିଲା—"କାଲି ସକାଳୁ ଚାଲି ଯାଉଚୁ ? କେଇଟା ଦିନ ଥିଲୁ । ତୋ ସାଙ୍ଗରେ ଖେଳିବାକୁ ଭଲ ଲାଗୁଥିଲା । ଏଣେ ତେଣେ ଭୁ ଚାଲି ବୁଲି କଲାବେଳକୁ ଆମ ଘରଟା ସୁନ୍ଦର ଦିଶୁଥିଲା" ।

ଅନୁ ଅନ୍ଧକାର ଭିତରେ ନରୋତ୍ତମ ଆଡ଼କୁ ମୁହଁ ବୁଲାଇ ସୁଁ ସୁଁ କାନ୍ଦି ଉଠୁଚି । ଆଖି ଦିଟାକୁ ତାର ନିଜ ହାତରେ ପୋଛି ଦେଇ ନରୋତ୍ତମ କହିଲା—"ଆସିବୁ ନାହିଁ କେବେ ଆମ ଘରକୁ" ?

"କେମିତି ଆସିବି ? ଆଣିଲେ ସିନା ! ମୁଁ ତ କହୁନଥିଲି । ବଳାଉ ନଥିଲି । ଗୁଁ କୁ ଗୁଁ ବୋଉ ସେ ଦିନ 'ଝିଅ' କରି ନେଲେ, ଆଜି ଅନ୍ତର କରି ଦେଉଛନ୍ତି । ଆମେ ଗରିବ । ଭିତର କଥା ବୁଝୁଁ ନାହୁଁ । ବଳପଡ଼ି ଆମେ କାହା ଦୁଆରକୁ ଗୋଡ଼ ବଢ଼ାଉ ନାହୁଁ । ସିନେହର ହାତ ବଢ଼ାଇ ଆମକୁ କୋଳ ଭିତରକୁ ଟେକି ନେବାକୁ କିଏ କହୁଥିଲା, ପୁଣି ଆଜି 'ଛି' କରି ଅପମାନ ଦେଇ ବାହାର କରି ଦେବାକୁ କିଏ ବା କହୁଚି ? ଗରିବ ହେଲେ ବି ଆମର କଅଣ ମାନ ସମ୍ମାନ ନାହିଁ" ?

ଗାଁ ମାଇନର ସ୍କୁଲରେ ଅନୁ ପଢ଼ିଚି । ଜ୍ଞାନ ତାର ହେଲାଣି । ଆଜିର ଅବଜ୍ଞା ତା ପ୍ରାଣରେ ଶେଳବିଦ୍ଧ କରିଚି । ଠିକ ଜୀବନର ଆତ୍ମସମ୍ମାନ ତାର ଆଜି ତୀବ୍ରଭାବେ ଅପମାନିତ ଓ ଲାଞ୍ଛିତ । ସେ କାନ୍ଦୁଚି ।

କିନ୍ତୁ ନରେନ୍ଦ୍ରମର ହାତ ଭିତରୁ ହାତଟିକି ଛଡ଼ାଇ ନେଇ ପାରୁ ନାହିଁ । ଛାତି ଉପରକୁ ଆଉଜାଇ ନେଇଚି ତାକୁ ନରୁ । ପଚାରୁଚି—"ଆଜି କେବେ ଆସିବୁ ନାହିଁ" ?

ଗମ୍ଭୀର ଭାବେ ଉତ୍ତର ଦେଉଚି ଅନୁ—"ନା, ନା" ।

"ମୁଁ ତମ ଘରକୁ ଗଲେ" ।

ମୁହଁଟିକି ବୁଲାଇ ଦେଉଚି ଅନୁ । ଚମକି ପଡ଼ୁଚି ।

"ସତେ ତମେ ଆମ କୁଡ଼ିଆକୁ ଯିବ ନରୁ ଭାଇନା ? ସତ କହୁଚ" ? ।

"ସତ କହୁଚି ଅନୁ, ନିଶ୍ଚେ ଯିବି" ।

"ମିଛ କହି ବୃଥାରେ ଆଶା ଦିଅ ନାହିଁ ନରୁ ଭାଇନା । ଗରିବକୁ ମିଛ ଆଶାରେ ଭଣ୍ଡିବା ଅଧର୍ମ" ।

"ଅଧର୍ମ ? ମୁଁ ଜାଣେ । ମୁଁ କିନ୍ତୁ ନିଶ୍ଚୟ ଯିବି" ।

ଅନୁ ଘୁଞ୍ଚି ଯାଉଚି ଦୂରକୁ ।

"କହୁଚି—କିନ୍ତୁ ଗୋଟିଏ କଥା । ମୋରତ ବିଶ୍ୱାସ ହେଉ ନାହିଁ ! ଗଲେ କିନ୍ତୁ—ବଡ଼ଲୋକର ଅହଙ୍କାର ନେଇ ଯିବ ନାହିଁ । ଆମେ ଗରିବ । ଗରିବର ଖୁଦ କୁଣ୍ଡାରେ ଯଦି ସନ୍ତୁଷ୍ଟ ହୋଇ ପାରିବା ପାଇଁ ପ୍ରସ୍ତୁତ ଥାଅ, ତେବେ ଯିବ" ।

ବଡ଼ ବଡ଼ କଥା କହୁଚି ଅନୁ । ଆଜି ସେ ସାରା ଦିନଟି ଅପମାନିତ । ଆଜି ତାର କେତେ କଥା ମନ ଭିତରେ ମରିଚି । ସାରା ଦିନଟି ଆଘାତ ପାଇ ପାଇ ପ୍ରତିଘାତ ଦେବା ଲାଗି ସେ ସୁଯୋଗ ଜଗିଥିଲା । କହି ପକାଇଲା ହଦହଦ ।

କିନ୍ତୁ ଶୁଣାଇବାର ପାଇଁ ନରୁ ଭାଇନା ନୁହଁ ନିଶ୍ଚୟ !

ଅନ୍ଧକାର ଭିତରେ ଦୁଇଟି ସୂର୍ଯ୍ୟ ମୂର୍ତ୍ତି । ଦୁହେଁ କାନ୍ଧ୍ ଚନ୍ତ ଏକୁଟିଆ ହୋଇଯିବାଲାଗି ।

"ମୁଁ ନଷ୍ଟେ ଯିବ ଅନୁ । ସମ୍ପତ୍ତି ମୁଁ କମେଇ ନାହିଁ । ମୁଁ ତ ତମପରି ଜଣେ ଗରିବ । ବୋଉଙ୍କ ସମ୍ପତ୍ତି ବୋଉ ନେଇ ଯାଆନ୍ତୁ । ମୁଁ ବୃନ୍ଦେ ମଣିଷ ପଣିଆ" ।

"ନଷ୍ଟେ ଯିବ ନରୁ ଭାଇନା ? ମୋ ରାଣ" ।

---

## ଛଅ

ରାଜଗୁରୁ ଓ ଅନୁରାଧା ଗାଁକୁ ଫେରିଲେ । ଫେରିଲା ବେଳକୁ ପଲ୍ଲୀବାସୀମାନଙ୍କର ହତାଦରକୁ କେହି ପାସୋରି ପାରିଲେ ନାହିଁ । ଗରିବ ପ୍ରତି ସମସ୍ତଙ୍କର ଅନାଦର । ତଥାପି ପଦ୍ମା କୋଣାର୍କଠାରୁ ରାଧାକୁ ନେଇ କେତେଦିନ ବଡ଼ ଯତ୍ନ କରିଥିଲେ । ସେଥିଲାଗି ରାଜଗୁରୁ ନିଜର ଆନ୍ତରିକ କୃତଜ୍ଞତା ଜଣାଇ ଆସିଛନ୍ତି । ରାଧା ପଦ୍ମାଙ୍କ ପାଦ ତଳେ ମୁଣ୍ଡିଆ ମାରି ବିଦାୟ ନେଇ ଆସିଛି ।

ଗାଁକୁ ଫେରି ରାଜଗୁରୁ ଭଉଣୀକି ଚିଠି ଲେଖି ପୁରୀରୁ ଅଣାଇଛନ୍ତି । ଦୁଃଖୀର ସଂସାରଟି ପୂର୍ବପରି ଚାଲିଛି । ପୁଣି ସେହି ଗଞ୍ଜଣା, ସେଇ ତାସପର୍ଯ୍ୟା, ସେଇ ଭାଙ୍ଗ ଘୋଟା, ସେଇ ଅଜ୍ଞାନ ହୋଇ ପଡ଼ିବା ଛଡ଼ା ରାଜଗୁରୁଙ୍କର ନିତ୍ୟ ନୈମିତ୍ତିକ କାର୍ଯ୍ୟକଳାପରେ ଲେଶମାତ୍ର ପରିବର୍ତ୍ତନ ଦେଖା ଦେଲାନାହିଁ । ସାମାନ୍ୟ ଜମିବାଡ଼ି ଓ କେତୋଟି ନଡ଼ିଆ ଗଛ ଛଡ଼ା ଆୟର ପନ୍ଥା ଆଉ କିଛି ନାହିଁ । ଯୁଦ୍ଧ ବଜାରରେ ସବୁ ଜିନିଷ ମହରଗ ହୋଇଗଲା । ଆଶା ଥିଲା, ସ୍ୱାଧୀନତା ପରେ ଦେଶରେ ଘିଅ ମହୁ ଭାସିବ । ସମସ୍ତଙ୍କ ଅଭାବ ଅସୁବିଧା ଦୂର ହୋଇଯିବ । ମାତ୍ର ସ୍ୱାଧୀନତାର ଆନୁକୂଲ୍ୟରେ ସବୁ କଥା ଅଭାବ ପଡ଼ିଲା । ହୁ ହୁ ହୋଇ ମହରଗ ହୋଇଗଲା । ଯାହାର ଦାମ ଥରେ ବଢ଼ିଲା ସେ ଆଉ ତଳକୁ ଖସିଲା ନାହିଁ । ପ୍ରତି ଗ୍ରାମର

ଶହ ଶହ ପରିବାରରେ ଉତ୍କଟ ଅଭାବ ଦେଖାଦେଲା । ପ୍ରକୃତିର ଅଭାବ ନୁହେଁ ଇଏ—କୃତ୍ରିମ ଅଭାବ, ଦୁର୍ଭିକ୍ଷ । ସ୍ୱାଧୀନତାର ଦାନ ଘେନି କେତେ କେତେ ଦରିଦ୍ର ପରିବାର ଘରଖିଆ ହୋଇଗଲେ । ତ୍ୟାଗ ଓ ଖଦଡ଼ ନାମରେ ଅନେକେ ଅନେକ ପଦ ପିନ୍ଧାଇ ବଡ଼ ଲୋକ ହେଲେ । କଳାବଜାରୀଙ୍କୁ ଫାସି କାଠରେ ଝୁଲାଇବା ପାଇଁ ମୌଖିକ ଧମକ ଦେଇ ନେତାମାନେ ବିଭିନ୍ନ ଉପାୟରେ ନେବାର ଫିକର ପିନ୍ଧାଇଲେ । ମୁଦ୍ରାସ୍ଫୀତି ସଙ୍ଗେ ସଙ୍ଗେ ଦେଶ ସାରା ଅଭାବ ଅନାଟନ ତୀବ୍ର ଭାବରେ ଦେଖାଦେଲା । ରାଜଗୁରୁ ପରିବାରର ଗୁରୁଅଭାବ ଗୁରୁତର ରୂପ ଧାରଣ କଲା । ଝିଅଟି ବଢ଼ିଲା । ପରଘରକୁ ପଠାଇ ଦେବା ପାଇଁ ଭାଇ ଭଉଣୀ ବହୁ ଚେଷ୍ଟା କରି ବିଫଳ ହେଲେ । ଆଧୁନିକ ସମାଜର ବରପାତ୍ର ଓ ବରକର୍ତ୍ତା, ହଜାର ହଜାର ଯୌତୁକ ହାଙ୍କୁଛନ୍ତି । ଗରିବର ଝିଅକୁ ତୁଳସୀ ପତ୍ର ପାତ୍ର ରୂପେ ଗ୍ରହଣ କରୁଚି ବା କିଏ ?

ରହି ରହି ଅନୁରାଧାର ମନ ଭିତରେ ପ୍ରହରାଜ ଘର କଥା ମନେ ପଡ଼ୁଚି । ନରୁ ଭାଇନା କହିଥିଲା ଆସିବ ବୋଲି । କିନ୍ତୁ କାହିଁ ? ଦିନ ଦିନ, ମାସ ମାସ, ବର୍ଷ ବର୍ଷ କରି ତିନୋଟି ବର୍ଷ ବିତିଲା ! ଅନୁରାଧାର ଅଙ୍ଗ ଅବୟବରେ ଅନୁପମ ପରିବର୍ତ୍ତନ । ମନ ଭିତରେ ତରଙ୍ଗର ଢେଉ ପିଟି ହୋଇ ଯାଉଚି ବାରମ୍ବାର —ନରୁ ଭାଇନା ଏତେକରି କହିଥିଲା ଆସିଲା ନାହିଁ ! ବଡ଼ ଲୋକଙ୍କ କଥାରେ ଠିକଣା ନାହିଁ । ପାଣିର ଗାର ପରି ସେମାନଙ୍କ ଜବାବ । ଏତେ ସ୍ନେହ କରୁଥିଲା । ଏତେ ରାଶି ନୟନ ପକାଇ ଆସିଥିଲା ରାଧା । କିନ୍ତୁ ତିନୋଟି ବର୍ଷ ବାଟ ଚାହିଁ ଚାହିଁ କାହିଁ ତାର ଛାଇଟିତ ଦେଖିବାକୁ ପାଉନାହିଁ ।

କଲେଜ ରୁମ୍‌ର ନରୋତ୍ତମର ଟେବୁଲ ଉପରେ ଥରେ ପଦ୍ମବାସିନୀଙ୍କ ନଜର ପଡ଼ିଥିଲା । ଆସିବାର ମାସେ ଦୁମାସ ପରେ ଅନୁରାଧା ଖଣ୍ଡିଏ ପୋଷ୍ଟକାର୍ଡ଼ ଲେଖି ପଠାଇଥିଲା । ବଙ୍କାଟଙ୍କା ଅକ୍ଷର । ନରୁ ତାର ଉତ୍ତର ଲେଖି ପଠାଇବ ବୋଲି ସାଇତି ରଖିଥିଲା ସେଇ ଟେବୁଲ ଉପରେ । ବୋଉଙ୍କ ନଜର ପଡ଼ିଲା । ସେ ପୁଅକୁ ଡାକି ଶାସନ କରିଦେଲେ—"କଅଣ ? ଗୋଟାଏ ଛତରା ଗଞ୍ଜେଇଡ଼ ଭିକାରୀର ଝିଅ ;ଅନୁରାଧା—ଇଆ ପାଖକୁ ଚିଠି ଦେଉଚ ! ଆଉ ଏ ଛତରା ତା ପାଖକୁ ଚିଠି ଦେଉଚ ! ଲାଜ ମାଡ଼ୁ ନାହିଁ ? ପିଲାଟା ଏକୁଟିଆ ପଡ଼ି ଯାଇଥିଲା । ଆମେ ଘରକୁ ନେଇ ଆସିଥିଲୁ । ନିଆଶ୍ରା ପିଲାପରି ଦିନ କେଇଟା ଆମ ଘରେ ସ୍ଥାନ ଦେଇଥିଲୁ । ତା ବାପା ଆସି ତାକୁ ଘେନିଗଲା । କାମ ସରିଲା । ତା ସାଙ୍ଗରେ ପୁଣି ଚିଠିପତ୍ର ଦିଆ ନିଆଟା କଅଣରେ ? ପାଠଶାଠ ପଢ଼ି ଏଇଆ ଅକଲ ? ଲାଜ ମାଡ଼ୁନାହିଁ ? କାହାର ପୁଅ, କାହାର ନାତି ହୋଇ ଏଙ୍କର ଏଡ଼କ ଛୋଟିଆ ନଜର । ମତେ କଅଣ ବୋହୂ କରି ଆଣିବାକୁ ବଡ଼ଲୋକ ଖାନଦାନ ଘର ଅପୂର୍ବ ହେବେ ? ସମାନ ସମାନ ଏକାଠି ବସିଲେ ସୁନ୍ଦର ଦିଶେ ସିନା । କାଙ୍ଗାଳ ଭିକାରୀଙ୍କି ଯେତେପାରି ସାହାଯ୍ୟ କର । ସେମାନେ ଅନୁଗ୍ରହ ପ୍ରାର୍ଥୀ ହେବାକୁ ଯୋଗ୍ୟ ସିନା, ବନ୍ଧୁ ହେବାକୁ ସମର୍ଥ ନୁହନ୍ତି । ତୁ ତା ପାଖକୁ ଚିଠିପତ୍ର ଦେଏନା ମୁଁ କହିଦେଲି । ସେମାନଙ୍କ ସହିତ ଆମର ସମ୍ପର୍କଟା କଅଣ" ?

ମନେ ମନେ ନରୋତ୍ତମ ଭାବିହେଲା କହିଦେବ ବୋଲି— 'ବୋଉ ତୁମେଇତ ସେଦିନ କହିଥିବ—ମୁଁ ତତେ ଝିଅ କଲି ଲୋ ରାଧି, କାନ୍ଦନା' ।

କିନ୍ତୁ ମାଆଙ୍କୁ ଓଲଟି ଜବାବ ଦେବାର ଶକ୍ତି ନାହିଁ ନବୋତ୍ତମର । ଅଭ୍ୟାସ ମଧ୍ୟ ନାହିଁ । ମନ କଥା ମନରେ ରହିଲା । ଚିଠି ଦଖଣ୍ଡି ସେ ଚିର ଫିଙ୍ଗିଦେଲା । ତା ପଡ଼ାପଡ଼ିରେ ପୂର୍ବପରି ଲାଗିଗଲା । ଗ୍ରହିଲା ତାର ପୂର୍ବପରି ଦିନ ରାତି । ଅନୁରାଧା ମିଳିଲା । ସଙ୍ଗରେ ଆସିଲା, ଘରେ ରହିଲା, ତା ସହିତ ମିଳାମିଶା, ହସ ଖେଳ, ମାନ ଅଭିମାନ, ରଣ ନୟମ, ସବୁଗୁଡ଼ିକ ଲାଗିଲା ସ୍ୱପ୍ନପରି ।

କିନ୍ତୁ ସ୍ୱପ୍ନଟା ଭୁଲି ହେଉନାହିଁ ।
ଭୁଲି ହେଉନାହିଁ ଅନୁରାଧାର ଶେଷ ଅନୁରୋଧ—
'ନିଶ୍ଚେ ଯିବ ନବୁ ଭାଇନା, ମୋରାଣ' !

ଅନୁରାଧା ଛଦୋଟି ବର୍ଷ ହେଲା ଅନାଇ ରହିଚି, ଅଗ୍ରବ ବଢ଼ିଚି । ବୟସ ବଢ଼ିଚି—ମନ ବଦଳିଚି, ପ୍ରାଣରେ ମଧୁ ସଞ୍ଚରିଚି । ଆଶାରେ ମରୀଚିକାର ଢେଉ ଖେଳିଲାଣି । ଆଶାୟୀ ପ୍ରାଣ ଆଶା ଦେନ ଅନାଇ ରହିଚି, ନବୁ ଭାଇନା ଆସିବ ନିଶ୍ଚେ ।

× × × ×

ନିଶ୍ଚୟ ପରିବର୍ତ୍ତନ ଆସିଚି ଓ ଆସିବ । ସ୍ୱାଧୀନତା ପରେ ଲୋକେ ସୁଖ ସମୁଦ୍ରରେ ବୁଡ଼ବୁଡ଼ି ଖାଇବେ । ଡ଼ାକ ଶୁଭିଲାଣି— 'ଲଙ୍ଗଳ ଯାହାର ଜମି ତାର' । ଲଙ୍ଗଳ ଧର ନୋହିଲେ ମର । କର୍ମ କୋଡ଼ି ମରନ୍ତୁ, ସରନ୍ତୁ ।

ସରକାର ଭାଗଚାଷ ଆଇନ୍ ପାସ କରିଚନ୍ତି । ଚାଲୁ କରିବା ଭାର ଲୋକଙ୍କ ହାତରେ । ଜମି ମାଲିକ ବଳପୂର୍ବା ହେଲେ ଭାଗଚାଷି

ଉପୂରେ ପୂର୍ବପରି ଅଧା ଅଧା ଦେଇ ଯାଉଚି । ଫସଲ ଗଣ୍ଡିକ କାଟି ମାଲିକ ଦୁଆରକୁ ଆଣୁଚି, ମଲି ମକଚି ଅଧାଅଧି ଦେଇ ଯାଉଚି । ଗରିବ ଜମି ମାଲିକ ଭାଗଚାଷୀ ହାଙ୍କୁଚି ଦୋଭାଗୀ ତେଭାଗୀ । ଦେଲା ବେଳକୁ ଦେଉଚି ଦେବତାଙ୍କ ତାର ବ୍ୟପ୍ତ—ଅନୁଗ୍ରହ । ମାଲିକ ଉକାଶ୍ ପରି ତା ଦୁଆରେ ହାତ ପତାଇଚି । ବାଟିଏ ଜମିର ମାଲିକ ଘରେ ଦ ଶହଜଣ । ଖାଇବା ପାଇଁ ଧାନ ଗଣ୍ଡିଏ ନାହିଁ । ଜଗୁରୁ ଘରେ ଅଭାବଟା ଉତ୍କଟ ରୂପ ଧାରଣ କଲାଣି । ବାଇ ବାଭୁଳ ପରି ଜଗୁରୁ ଗାଁ ଗାଁ ବୁଲିଲେଣି । ଭାଗଚାଷୀ ଦୁଆରେ ଧାରଣା ଦେଲେଣି, ଫଳ କିନ୍ତୁ କିଛି ନାହିଁ ।

ନ୍ୟାୟ ସଙ୍ଗତ ସମାଧାନ ପାଇଁ ନୂଆ ଆଇନ ବାଟ ଫିଟାଉ ନାହିଁ । ଶୃଙ୍ଖଳା ନାମରେ ବିଶୃଙ୍ଖଳତା ବଢ଼ାଇ ଦେବାକୁ ଲାଗିଚି । ପରିବର୍ତ୍ତନ ଆସିଚି ଓ ଆସୁଚି । ସ୍ୱାଧୀନତା ଆସିଚି ସତ କିନ୍ତୁ ସମାଧାନ କାହିଁ ? ବେକାର ସମସ୍ୟାର ସମାଧାନ ଲାଗି ବଡ଼ ବଡ଼ ବ୍ୟବସ୍ଥା ହେଉଚି, ତଥାପି ଯଥାର୍ଥ ବ୍ୟବସ୍ଥା କାହିଁ ! ବେକାର କମୁଚି କାହିଁ ! ଗାଁରୁ ଇଂରେଜ ଅମଳର ପ୍ରେସିଡ଼େଣ୍ଟ ପ୍ରଥା ଉଠାଇ ଦିଆଯାଇଚି । ଗ୍ରାମ ପଞ୍ଚାୟତ ଓ ସରପଞ୍ଚ ପ୍ରତିଷ୍ଠା କରାଯାଇଚି । ଆଗର ଦଳାଇ ଏକ ସରପଞ୍ଚ ପାଲଟିଚନ୍ତି । ନୂଆ ବୋତଲରେ ପୁରୁଣା ମଦ ପୂର୍ବପରି ଠିକ୍ ଅଛି । ବଦଳି ନାହିଁ କିଛି । ବରଂ ଅଭାବଟା ବହୁ ପରିମାଣରେ ଅଧିକ ଓ ଅସହ୍ୟ ହୋଇ ଯାଇଚି ।

ପରିବର୍ତ୍ତନ ଆସିଚି ଓ ଆସିବ । ବିବ୍ୟସିଂହ ଜଗୁରୁଙ୍କ ଘର ଖଣ୍ଡିକ ଛୁଉଣି ଅଭାବରୁ ଭାଙ୍ଗି ପଡୁଚି । ଟିକିଏ ବର୍ଷା

ହେଲେ ଭିତରେ ମୁଣ୍ଡ ଗୁଞ୍ଜିବାକୁ ସ୍ଥାନ ନାହିଁ । ସଂସାରର ସହସ୍ର ଅଭାବକୁ ପାଶୋର ପକାଇବା ପାଇଁ ରାଜଗୁରୁ ନେଳାର ମାତ୍ରା ବଢ଼ାଇ ଦେଇଛନ୍ତି ।

'ଯେତେ ଦିନ ଶ୍ୱାସ, ତେତେ ଦିନ ଆଶ' ।

ପ୍ରାଣ ଥିବାଯାକେ ତାକୁ ବଞ୍ଚାଇ ରଖିବାକୁ ହେବତ ! କିନ୍ତୁ ଅନୁରାଧା ଓ ମନୋରମା କଥା କିଅଣ କରାଯିବ ? ଖଣ୍ଡିଏ ଖଣ୍ଡିଏ କରି ଧୀରେ ଧୀରେ ଜମି ବିକ୍ରି କରି ଦେବାକୁ ଆରମ୍ଭ କରି ଦେଲେଣି ରାଜଗୁରୁ । କିଣୁଛନ୍ତି ହରଗୃହୀମାନେ ଦଶ ଟଙ୍କାର ବଳଦକୁ ଟଙ୍କାଏ ଦୁଇ ଟଙ୍କାରେ । ଅକାଳ ବେଳ ପଡ଼ିଛି ! ଗରିବକୁ ଯିଏ ଯେତେ ପ୍ରକାରେ ଠକି ଭଣ୍ଡି ନେଇ ପାରିଲା । ଏଥିଲାଗି କିନ୍ତୁ ସ୍ୱାଧୀନ ଭାରତର ଆଇନ କିଛି ସାହାଯ୍ୟ କରିପାରୁ ନାହିଁ । ବରଂ କଣ୍ଟ୍ରୋଲ ବଜାରରେ ମିଳୁଥିବା ଜିନିଷ ଦୁର୍ମିଳ ହୋଇ ଯାଉଛି । ଦେଶରେ ନିଶ୍ଚୟ କିଛି ପରିବର୍ତ୍ତନ ଆସିବା ଦରକାର । ନୋହିଲେ ଯେ ସ୍ୱାଧୀନତାର ଅର୍ଥ କିଛି ହୁଏ ନାହିଁ । ଧୀରେ ଧୀରେ ରାଜଗୁରୁ ପରିବାରରେ ଓଳିଏ ବେଷେଇ ବନ୍ଦ ହେଲା । ଓଳିଏ ଖାଇ ଓଳିଏ ଉପାସ ରହି ଚିରା ଫଟା ଖଣ୍ଡିକରେ ହାଡ଼ମୁଣ୍ଡ ଘୋଡ଼ାଇ ମଲାପରି ବଞ୍ଚି ରହିବାରେ ସୁଦ୍ଧା ସେମାନଙ୍କ ଦୁଃଖ ଦୂର ହୁଏନାହିଁ । ଲୋକଙ୍କ ତୁଣ୍ଡରୁ ଶୁଣା-ଯାଉଛି—'ମରନ୍ତୁ କୋଢ଼ୀଆ ନକମାଯାକ ।

ନକମା ସିନା ରାଜଗୁରୁ ଓ ମନୋରମା । ଅନୁରାଧାଟିର କି ଦୋଷ ?

ଅନେକ ଦିନ ହେଲା ରାଧା ଭାବୁଚି ଦିନେ ଏକୁଟିଆ ଚାଲି ଚାଲି ଯିବ ପ୍ରହରାଜଙ୍କ ଦୁଆରକୁ । କିନ୍ତୁ ମନ ଦବିଯାଏ—ପଛୁଇ ପଡ଼େ । ଏତେ କରି କହିଥିଲେ ନରୁ ଭାଇନା, କିନ୍ତୁ ଆସିଲେ ତ ନାହିଁ ଥରେ ଦେଖିବା ପାଇଁ ! ଭାବି ଭାବି କାନ୍ଦି କାନ୍ଦି ରାଧାର ତିନୋଟି ଦିନ ବିତିଲା । ଶେଷକୁ ଖଣ୍ଡେ ପୋଷ୍ଟ କାର୍ଡ଼ରେ ନିଜର ଦୁଃଖ କଥା ଲେଖି ନରୁ ଭାଇନା ଠିକଣାରେ ପକାଇ ଦେଲା ।

ଅତି ଉତ୍କଟ ଅଭାବ । ରାଜଗୁରୁ ବାରଘଡ଼ରେ ଘଡ଼ିଏ ଘରେ ରହୁନାହାନ୍ତି । ବୁଢ଼ୀ ମନୋରମା ଦାଣ୍ଡ ପିଣ୍ଡାଟିରେ ଗାଲରେ ହାତ ଦେଇ ବସି ରହିଚି । ମନ ଭିତରେ କେତେଦିନ ହେଲା ଝିଙ୍କି ମାରୁଚି ଗଙ୍ଗାମାତା ମଠର ଆଶ୍ରୟ । ମନ ହେଉଚି ଏ ଘରଦ୍ୱାର ଛାଡ଼ିଛୁଡ଼ି ଦେଇ ଦିନେ ଚାଲିଯିବ ସେଇ ମଠକୁ । ସେଠି ନିଶ୍ଚୟ ଆଶ୍ରୟ ମିଳିବ କିନ୍ତୁ ଅନୁରାଧାଟି କଅଣ କରିବ ? କେମିତି କେଉଁଠି ଏକୁଟିଆ ରହିବ ! କିଏ ତାର ଆଶ୍ରା ହେବ ? ସିଂହତ ଦିନ ରାତି ବାଇବାଉଳ ପରି କୁଆଡ଼େ ନାହିଁ କୁଆଡ଼େ ଘୂରି ବୁଲୁଚି !

ଗରିବ ସଂସାରରେ ଶତ ଅଭାବ ଭିତରେ ଥାଇ ସୁଦ୍ଧା ଅନୁରାଧାର ଅଙ୍ଗଲତାର ଯୌବନ ଶ୍ରୀ ପ୍ରସ୍ଫୁଟିତ ହେବାର ଅଭାବ ରହିଲା ନାହିଁ । ସମାଜ ଓ ନୈତିକତା ଧୀରେ ଧୀରେ ଦୁର୍ବଳ ହୋଇ ପଡ଼ିଲାଣି । ପୁରୁଣା ଗ୍ରାମ୍ୟଜୀବନ ଏକାବେଳକେ ବଦଳି ଗଲାଣି । ସୁନ୍ଦରୀ ଅନୁଟି ପୋଖରୀ ତୁଠକୁ ଗଡ଼ିଲା ବେଳକୁ ଗାଁ ପିଲାଏ ଅନାଇ ରହୁଚନ୍ତି । ଆପଣା-

ଆପଣା ଭିତରେ ଠାରଠାରି ହେଉଚନ୍ତି । କେତେ ଯୁବକର ବୁଭୁକ୍ଷୁ ଦୃଷ୍ଟିରୁ ଆପଣାକୁ ଯଥା ସମ୍ଭବ ବଞ୍ଚାଇ ରାଧା ଘରକୁ ଫେରେ । ଦେଖେ, ଭଙ୍ଗା ଘରର ବୃଦ୍ଧପଣ୍ଡ କେତେ ଗୁଡ଼ାଏ ଉଦ୍‌ଦୀପ୍ତ ଆଖି ତାହାକୁ ଲକ୍ଷ୍ୟକରି ଦୃଷ୍ଟିବାଣ ନିକ୍ଷେପ କରୁଚନ୍ତି । ବୁଢ଼ୀ ମନୋରମା ସବୁ ଦେଖୁଚି । ସମସ୍ତଙ୍କ ଫୁସ୍ ଫାସ୍ କଥା ତା କାନରେ ବାଜୁଚି । କିନ୍ତୁ ଉପାୟ କଅଣ ? ଘରର ମୁରବୀ ପାଗଳ ହେଲେ ଆଶ୍ରିତ କେତୋଟି ନିରାଶ୍ରୟ ହୋଇଯିବା ଛଡ଼ା ଅନ୍ୟ ଉପାୟ କଅଣ ଅଛି ?

ସରପଞ୍ଚ ମଦନ ତ୍ରିପାଠୀ । ଆଗେ ବନ୍ଦୋବସ୍ତରେ ଅମିନ କାମ କରୁଥିଲେ । ଏବେ ଗାଁରେ ମଦନ ବାବୁ । ହାରଗୁହାରି ନ୍ୟାୟ ନିସାପକୁ ପଖାଉଜର ଆଗ ପିଚ୍ଛା ଦିପାଖରେ ହାତ ମାରନ୍ତି । ମାମଲତକାର ବୋଲି ତାଙ୍କର ଦୁଆରକୁ ନିତି ପ୍ରତି କେତେ ସରକାରୀ ଜିପ୍ ଦୌଡ଼ୁଚି । ବିଦ୍ୟାଳୟ ଆରମ୍ଭକୁ ସେ, ରାସ୍ତା ମରାମତି ବେଳକୁ ସେ, କୃଷିଋଣ ଲଗାଣ ବେଳକୁ ସେ, ରିଲିଫ୍ ବଣ୍ଟା ବେଳକୁ ସେ । ସବୁ କଥା ବେଳକୁ ସେ ଆଗଭର । ତାଙ୍କୁଇ ଡ଼ାକିବା ପଡ଼େ ।

ଖୋଦ ମଦନ ବାବୁ ଦିନେ ଖରାବେଳେ ରାଜଗୁରୁଙ୍କ ଭଙ୍ଗା ଘରଟି ଭିତରକୁ ଡ଼ାକି ଡ଼ାକି ପଶି ଆସିଲେ—'ରାଜଗୁରୁ ଅଛନ୍ତି ଘରେ ! ଆହା କେଡ଼େ ବଡ଼ ଘରଟା କେମିତି ହୋଇ ଚାଲିଣିତ ! କେହି ହେଲେ ମୋ ଆଗରେ ଏଙ୍କ କଥା କହୁଚି ଭଲା ? ରାଜଗୁରୁତ ସମ୍ଭ୍ରାନ୍ତ ଓ ଅଭିମାନୀ ଲୋକ । କାହାପୁଅ କାହା ନାତି । ନିଜେ କେମିତି ବା ଯାଇ କହନ୍ତେ ! କିନ୍ତୁ ମୋ କାନରେ ପଡ଼ିଥିଲେ ଏତେସବୁ ଅବସ୍ଥା କେବେଁ ହୋଇ

ନଥାଆନ୍ତା । ମୁଁ ନିଶ୍ଚେ କୁଆଡ଼ୁ କେମିତି କଷ୍ଟୁ ଗୋଟାଏ ସାହାଯ୍ୟର ବରାଦ କରି ପାରନ୍ତିଣି' ।

ମନକୁ ମନ କହିକହି ଘର ଭିତରକୁ ପଶି ଆସିଲେ ମଦନବାବୁ । ସବୁ କଥା ମନୋରମାଙ୍କ କାନରେ ପଡ଼ିଲା । ଭିତରୁ ବାହାରି ଆସୁ ଆସୁ କହିଲେ—'ସିଂହ ନାହିଁ ଘରେ । କୁଆଡ଼େ କେମିତି ଆପଣଙ୍କ ପାଦ ପଡ଼ିଲା' ?

ମଦନ ତ୍ରିପାଠୀ । ବୟସ ଚାଳିଶ ହେବ । ଘରେ ଦୋଟି ପୁଅ ଗୋଟିଏ ଝିଅ । ସ୍ତ୍ରୀ ମରିଯିବାର ପାଞ୍ଚ ବର୍ଷ ହେଲା । ଏଥି ମଧ୍ୟରେ ତ୍ରିପାଠୀଏ ଗାଁ ବାହାରେ ଗୋଟିଏ ରକ୍ଷିତା ବ୍ୟବସ୍ଥା କରି ନେଇଛନ୍ତି । ତଥାପି ମନ ଭିତରେ ଅଭାବଟା ପୂର୍ବ ମାତ୍ରାରେ ଅନୁଭୂତ ହେଉଛି । ଘରଟା ଖାଁ ଖାଁ ଗୋଡ଼ାଉଛି । ରାଜଗୁରୁଙ୍କ ଅଭାବର ସୁଯୋଗ ଉଣ୍ଡି ଅଯାଚିତ ଭାବରେ ଧାଇଁ ଆସିଛନ୍ତି । "ଦିନେ ନାହିଁ, କାଳେ ନାହିଁ ! ଗହ୍ମା ପୂନେଇରେ ମାଇଁ ଡ଼ାକରି ଡ଼ାକିବା ପାଇଁ" । ଘର ଭିତରେ ଅନୁରାଧା । ଷୋଳ ସତର ବର୍ଷର ବଢ଼ିଲା ଝିଅ । ଖାଲି ପିଣ୍ଡା ଉପରେ ବସି ପଡ଼ୁଥିଲେ ମଦନବାବୁ ।

"ସିଂହ ନାହିଁ ଘରେ । ଆସିଲେ ପଠାଇ ଦେବ ।"

"ନଥାଆନ୍ତୁ ସେ । ତୁମରି ସାଙ୍ଗରେ ଦିପଦ କଥା ହୋଇ ଚାଲି ଯିବି" ।

ମନେ ମନେ ନାହିଁ ନାହିଁ କହି ବାଧହୋଇ ସଢ଼ପ ଖଣ୍ଡିଏ ଆଣି ପିଣ୍ଡା ଉପରେ ପକାଇ ଦେଲେ ମନୋରମା—"ହଉ

ବସନ୍ତୁ । ଗରିବ ପିଣ୍ଡାରେ ବଡ଼ ଲୋକଙ୍କୁ ବସିବାକୁ ସୁବିଧା କାହିଁ” !

“ସବୁଠି ସୁବିଧା ନଥାଏ ମାଉସୀ, ସୁବିଧା କରାଇ ନେବାକୁ ହୁଏ । ଆମେ ହେଲୁ ଦେଶ କର୍ମୀ । ଗରିବ ଅମୀର ଆମ ଆଖିରେ ସମସ୍ତ ସମାନ । ତୁମ ଦୁଃଖ ଦେଖି କିଛି ଗୋଟାଏ ବ୍ୟବସ୍ଥା କରିବାକୁ ମୁଁ ଆସିଛି । ତମେ ମୋ କଥା ରଖିଲେ ତମର ଉପକାର ହେବ । ତମେ ଚଳି ଯିବ । କଥାଟି ନ ରଖିଲେ ଅନିଷ୍ଟ ହେବ । ମୋ ନାଁ ମଦନ ତ୍ରିପାଠୀ” ।

ଆତଙ୍କରେ ବୁଢ଼ୀର କଲିଜା କମ୍ପି ଉଠିଲା । ଆଉ ଶାର୍ଘ ବିକୋଶ ଭିତରେ ମଦନ ତ୍ରିପାଠୀ ମାମଲତକାର, ମାମଲ୍‌-ବାଜ । ତାଙ୍କର ବିଷ ଆଖି ଯାହା ଉପରେ ପଡ଼ିଛି, ସେ ଘର ପାଞ୍ଜିରୁ ଗଲା । ଏ ଘର ଚାଳ ଉପରେ ଆଜି ପେଚା ବସିଲାଣି । ଭୟ ଓ ଆଶଙ୍କାରେ ହାତ ଥରି ଉଠୁଛି । ଉଠି ଯାଅ ବୋଲି କହି ଦେବାକୁ ବଳ ପାଉନାହିଁ । ସାଇ ପଡ଼ିଶାରୁ କାହାକୁ ଡାକି ଆଣିବ, କିନ୍ତୁ କେହି ବାହାରିବେ ନାହିଁ । ପର ଉପକାର ପାଇଁ କିଏ କାହିଁକି ନିଜ ଘରକୁ ନାଳ ଖୋଲି ନଈ କୁମ୍ଭୀରକୁ ନିମନ୍ତ୍ରଣ କରି ନେବ !

ବସି ପଡ଼ିପଡ଼ୁ ମଦନବାବୁ କହିଲେ—“ରାଜଗୁରୁ ଘରେ କାହିଁ ଥିବେ । ତାଙ୍କରି ପରି ତ କିଏ ଜଣେ ମହାଦେବଙ୍କ ମଣ୍ଡପ ଉପରେ ଭାଙ୍ଗ ନିଶାରେ ବେଚେତା ହୋଇ ଗଡ଼ୁଚନ୍ତି, ଧୁତୁରା ମଞ୍ଜି ଘୋଟା ଭାଙ୍ଗ ! ହ ହିନ ଭିତରେ ଆଉ ନିଶା ଛାଡ଼ୁଚନା” ?

ବୃଦ୍ଧଙ୍କକଥା ଗୁଡ଼ିଆ ପଶିଗଲା ମନୋରମାର ମନ ଭିତରେ । ତେଣେ ମଦନ କୌଶଳରେ ସିଂହକୁ ଧୂରୁବ ମଞ୍ଜି ବଟା ନଶାରେ ବେହେତା କରି ପକାଇ ଏଣେ ବାହାର ଆସିଛ କେଉଁ ଉଦ୍ଦେଶ୍ୟ ଘେନ ।

"ରୁହ ବାବୁ ଟିକେ ମୁଁ ସାଇରୁ କାହାକୁ ଡ଼ାକ ଆଣେ କ, କଥା ଭଷା ହବ" ।

"ଦରକାର ନାହିଁ । ମୋ ନା ଶୁଣିଲେ ଡ଼ାକଲେ ବି କେହି ଆସିବେ ନାହିଁ ମାଉସୀ, କଏ ମତେ ନ ଡ଼ରେ ? କାହା ଛାତିରେ ଦମ୍ଭ ଅଛି ଏଠିକି ମୋ ଆଗକୁ ଆସିବ ?

"ହେ ଭଗବାନ, କି ଭୟଙ୍କର ଏ ଲୋକଟା" ।

'ହି ହି' ହୋଇ ହସିଉଠିଲା ମଦନ ବାବୁ । ଗୁମ୍ଫ ଦାନ୍ତ ଦାଇ ଢନଟା ଭର୍ତ୍ତି ଯାଇଚି । ମୁଣ୍ଡର ବାଳ ଗୁଲାପଣ ଧଳା । ଆଖି ଦଇଟା ଖୋଳା ଖୋଳା ପଶି ଗଲାଣି । ଗାଲ ଖାଲ ହୋଇ ଗଲାଣି । ହି ହି ହୋଇ ହସି ଉଠୁଚି ନିପାଠୀ । ଗୋଡ଼ ଉପରେ ଗୋଡ଼ ପକାଇ ବସି ପଡ଼ୁ ପଡ଼ୁ କହି ଉଠିଲା—"ଡ଼ାକଲେ କେହି ଆସିବେ ନାହିଁ ନାଣ । ସମସ୍ତେ ଜାଣନ୍ତି ମୁଁ ଆଜ ତମ ଘରକୁ ଆସିଚି ତମଠଉଁ ଜବାବ ନବାପାଇଁ । ସାଇ ପଡ଼ଶାଏ ସମସ୍ତେ ରାଜ ହୋଇ ଗଲେଣି । ପାଞ୍ଚ ଦଶଟା ଟଙ୍କା ଧରେଇ ଦେଲେ ଖାଙ୍କଗୁରୁ ରାଜ ହୋଇ ଯିବେ । ଖାଲି ତମରିଠଉଁ ମୋର ଜବାବ ଦରକାର । ମୁଁ ତମ ଝିଆସିଟିକ ବାହା ହେବ । ଭଲରେ ରାଜ ନହେଲେ ଜବରରେ କରିବ । ରାତା ରାତି ଟେକ ନେଇ ବେଘ ଉପରେ ବଲ ହୋଇ ପଡ଼ବ ।

ଯାଅ ତୁମେ ଯାହା ପାଖକୁ ଯାଉଚ ଯାଅ । ପୁଲିସିକୁ କହିବ କୁହ । ଖାଲି ଏ ଗାଁର କାହିଁକି ଏ ଅଞ୍ଚଳର ସମସ୍ତେ ସାକ୍ଷୀ ଦେବେ ରାଜଗୁରୁ ସମସ୍ତଙ୍କ ସାମନାରେ ବେଦୀ ଉପରେ ମତେ କନ୍ୟା ଦାନ କରିଚନ୍ତି । ତା ପରେ ଉପାୟ" ?

ହି ହି ହୋଇ ବିକଟ ହସ ହସି ଉଠିଲେ ଗ୍ରାମପଞ୍ଚାୟତର ସରପଞ୍ଚ ଶ୍ରୀ ମଦନ ମୋହନ ତ୍ରିପାଠୀ । ବିକୃତ ମୁଖଭଙ୍ଗୀ ଦେଖିଲେ ଡ଼ରମାଡୁଚି । ଠିଆ ହୋଇଥିବା ସ୍ଥାନରେ ଗୋଡ଼ରୁ ମୁଣ୍ଡଯାକେ ଥରଥର ହୋଇ ଥରି ଯାଉଚନ୍ତି ମନୋରମା । ଘର ଭିତରେ କାନ୍ଥକୁ ଆଉଜିପଡ଼ି ରାଧା କାଠ ପାଲଟିଗଲାଣି ।

ତ୍ରିପାଠୀ ପଚାରିଲେ—"ନାମା, ତୁମେ ମୋର ହିସାବରେ ପିଉସୀଶାଶୁ ହେବ । ଅନେକ ଦିନରୁ ମୁଁ ଅନୁଟିକ ଆଖୋଇଲଣି । ଆଜିକି ଆଠଦିନ ପରେ ବାହାଘର ଅଛି । ସବୁ ମୁଁ ଯୋଗାଡ଼ କରିନେବି । ଆଜି ନ ହେଉ କାଲି ସକାଳକୁ ଭାବିଚିନ୍ତି ମତେ ଜବାବ ପଠାଇବ । ରାଜଗୁରୁ ତିନୋଟି ଦିନ ଘରକୁ ଆସିପାରିବେ ନାହିଁ । କାଲି ସକାଳକୁ ମୁଁ 'ହଁ' ବୋଲି ଜବାବ ନ ପାଇଲେ କାଲି ରାତିକି ଲୁଆରି ପଠାଇ ବଳପୂର୍ବା କନ୍ୟାଟିକି ଧରି ନେଇଯିବି । ରାଜିହେଲେ ତମର ସବୁ ପ୍ରକାରେ ସୁବିଧା ହେବ । ନାହିଁ କଲେ ମୁଁ ତ ନିଶ୍ଚୟ ଅସୁବିଧାକୁ ବାଧ୍ୟ ହେବି । ବୃଥାଟାରେ ତୁମେ ଲୋକହସା ହେବ ସିନା" !

'ହି ହି' ହୋଇ ହସି ଉଠିଲେ ମଦନ ବାବୁ !

ଶୂନ୍ୟ ଘର ଭିତରେ ପ୍ରେତହାସ୍ୟ କି ଭୟଙ୍କର ଶୁଭିଲା ସେ କଥା ବୁଝିଲେ ପିଉସୀ ଝିଆରୀ ଦି ଜଣଯାକ ।

"ମୁଁ ତେବେ ଉଠିଲି ପିଇସୀ । ପ୍ରଣାମୀ ସ୍ୱରୂପ ଦଶଟା ଟଙ୍କା ଦେଇ ଯାଉଚି ରଖିଥାଅ" ।

ନମସ୍କାର ବିବର୍ଜିତ । ବୁଢ଼ୀ ମନୋରମାର ହାତକୁ ଦଶ ଟଙ୍କା ବଢ଼ାଇଦେଲେ ମଦନ ବାବୁ । ବଗଡ଼ା ପସପର ଥରୁଚି ମନୋରମାର ଦେହସାରା । ଟଙ୍କାଦଶଟା ତଳକୁ ଖସିପଡ଼ି ଓଳାତଳ ନଳା ଭିତରକୁ ଗଡ଼ିଗଲା ।

'ହି ହି' ହୋଇ ହସିହସି ମଦନ ବାବୁ ପିଣ୍ଡା ତଳକୁ ଓହ୍ଲାଇ ଗଲେ । କହିକହି ଗଲେ—"କେଡ଼େ ବଡ଼ ଘରଟା କଅଣ ହୋଇଗଲା ହେ ! କିଛି ନାହିଁ, ମାସ ଗୋଟାକ ଭିତରେ ଇଆର ରୂପ ସମ୍ପୂର୍ଣ୍ଣ ବଦଳିଯିବ" ।

ପଥର ତଳକୁ ଓହ୍ଲାଇ ଗଲାବେଳକୁ ସାଇର ମାମଲତକାର ଦି ଚାରିଜଣ ଆଗଭର ଆସି ନମସ୍କାର କଲେ-"ଆଜ୍ଞା କୁଆଡ଼େ ବିଜେ ହୋଇଥିଲେ" ?

ହସିହସି କହି ଉଠିଲେ ମଦନବାବୁ—"ସେଇ କଥାମ, ସବୁତ ଆମର ଠିକ୍ ଠାକ୍ ହୋଇଯାଇଚି । ଖାଲି ପଦେ କହିଦେବାକୁ— କଅଣ ଆଉ ଆପଣମାନେ କହୁଚ" ?

ସମସ୍ତେ ଏକ ସ୍ୱରରେ କହିଉଠିଲେ—"ଆମେ ଆଉ କଅଣ କହିବୁ ଆଜ୍ଞା ? ଆପଣଙ୍କ କଥାରୁ ଆମେ କଅଣ ବାହାରି ପାରିବୁ" ?

ମଦନ ଗଲେ । ମନୋରମା ଇଆଡ଼ର ତାଘର ବୁଲି ପଚାରିଲା —"ଦେଖ ମୋ ଘର କଅଣ ତମ ଘର କଅଣ ? ଏତେଦୂର ସାହସ ତାକୁ କିଏ ଦେଲା ? ସିଂହଟା ପଗଲା ହେଲା ବୋଲି ତମେ ସବୁ କଅଣ କୁଆଡ଼େ ଗୁଳିଯାଇଚ ? ବାଧା କଅଣ ତମର ଝିଅ ନୁହେଁ" ?

ଜଣେ କହି ଉଠିଲା—"କଅଣ କହୁଚୁ ନାନୀ, ଆମେ ହୋଇ-ଥିଲେ କଅଣ କରିପକାନ୍ତୁ ? ସେ ତ ବଡ଼ଲୋକ । ବିଧାଟିବି ବିଭ ହୋଇ ପାରୁନାହିଁ । ତାଙ୍କର ହାତରେ ମନେ ମନେ ଟେକି ଦିଅ । ନୋହିଲେ ଅନର୍ଥ । ସେତ ଅଭିକା ସରକାରୀ କ୍ଷମତାରେ । ପେଞ୍ଚ୍ ଆ ମଣିଷଟା । ଇଚ୍ଛା କରିବତ ଏକା ଦିନକେ ଆମ ସମସ୍ତଙ୍କ ଘରଗୁଡ଼ିକ ଚୂନା କରିଦେବ । ଆମଘରୁ ଝିଅ ବୋହୂଙ୍କୁ ଭିଡ଼ିନେଲେ ଆମେ ବା ତାର କଅଣ କରି ପକାଇବା ? ଦେଖିଲୁପରା ସେ ଦିନ ରାମ-ସାଉର ଦରିଟାକୁ ରାତି ରାତି ଧରି ନେଇ ଗହ୍ମର ମଝିରେ ପୋଡ଼ ଚାଉଁଶ କରି ପକାଇଦେଲା ! କଅଣ କିଛି ପ୍ରମାଣ ହୋଇ ପାରିଲା ? କହିଚି ପରା—

ବଳ ଯାହାର, ମୂଲକ ତାଆର" ।

ଧୀରେ ଧୀରେ ସନ୍ଧ୍ୟାର ଅନ୍ଧକାର ମାଡ଼ିଆସିଲା । ରାନ୍ଧା ନାହିଁ କି ବଢ଼ା ନାହିଁ । ଦି ଦିନ ହେଲା କୁଆଡ଼େ ଯାଇଚି ସେ ଯାଇଚି—ସିଂହ ଫେରିନାହିଁ । କେବେ ଫେରିବ ତାର ବି ଠିକଣା ନାହିଁ । ମଦନା କହିଲାପରି ନିଶାରେ ଯେବେ କୋଉଁଠି ଗଡ଼ୁଥିବ, ତେବେ ତ କଥା ସରିଲା ।

ଦୀର୍ଘ ନିଶ୍ୱାସ ଟାଣି ମନୋରମା ଭଙ୍ଗାଘର ଭିତରକୁ ପଶିଲା । ଅନୁରାଧା ପଥର ପରି ସେଇଠି ସେମିତି ବସି ରହିଚି । କଅଣ କରିବିବ ? ପିଇସୀ ଝିଆରୀ କେହି କିଛି ଠିକଣା କରିପାରୁ ନାହାନ୍ତି । ଏକଲୟରେ ଦାଣ୍ଡ ଦୁଆରକୁ ଚାହିଁ ରହିଚନ୍ତି ମାନ । କ୍ରମେ କ୍ରମେ ରାତି ବଢ଼ୁଚି । ଧୀରେ ଧୀରେ ସାଇ ଶୂନ୍‌ଶାନ୍ ହୋଇଗଲା । ଏଙ୍କଘରେ ଆଲୁଅ ଜଳିଲା ନାହିଁ କି ଚୂଲିରେ ନିଆଁ ଲୁଣ୍ଡ ପଡ଼ିଲା ନାହିଁ । ରାତି ଅଧାହେଲା । ତେବେ ବି ସିଂହର

ଦେଖା ଦର୍ଶନ ନାହିଁ । ଗୃହଆଡ଼ ଖାଁ ଖାଁ ଗୋଡ଼ାଉଛି । ପାଖ ବରଗଛରେ ପେଚା ଦିଟା ବିକଟ ରାବ କରୁଛନ୍ତି । ଅଦୂର ମଶାଣି-ପଦାରେ ଅଣ୍ଡିରା ବିଲୁଆଟା ବିକଟ ରାବ ଛାଡୁଛି । ଗୃହଆଡ଼େ ଘୋର ଅନ୍ଧକାର ଘୋଟି ଯାଇଛି । ତେବେ ବି ନାମୀ ଝିଅଆସ୍ତିଙ୍କ ନିଦ ନାହିଁ । କେହି କହୁନାହିଁ ଭୋକ ଲାଗୁଛି ବୋଲି । ଦୁହିଁଙ୍କ ଆଖିରେ ଖାଲି ଦିଶି ଯାଉଛି—ମଦନାର ବିକଟ ବୀଭତ୍ସ ରୂପଟି । କାନ ପାଖରେ ରହି ରହି ଶୁଭିଯାଉଛି—ସେଇ ମଦନାର ରୁକ୍ଷ ତୀକ୍ଷ୍ଣ କଥା କେତେପଦ ଓ ବିକଟ ହସ ।

---

## ପାଞ୍ଚ

କୁଳଦେବତା ଚଣ୍ଡେଶ୍ୱରୀଙ୍କ ମନ୍ଦିରରେ ମୁଣ୍ଡିଆ ମାରି ଫେରୁଥିଲେ ପଦ୍ମାଦେବୀ । ପଢ଼ାଘର ଭିତରୁ ଧୀର ସ୍ୱରରେ ଡ଼ାକିଦେଲା ନରୋତ୍ତମ—'ବୋଉ' ।

"କିଏ, ନରୁ ? ଡ଼ାକୁଚୁ" ?

"ହଁ ବୋଉ" ।

ଭିତରକୁ ପଶୁ ପଶୁ ପଚାରିଲେ—"କଅଣ କହୁଚୁ" ? ଏବେ ବି କପାଳରୁ ମୁଣ୍ଡିଆ ମାରୁଥିବା ବେଳର ଧୂଳି ଚିହ୍ନ ଯାଇନାହିଁ । ମୁଣ୍ଡିଆ ମାରିବାବେଳେ କାନିଟା ବେକରେ ଗୁଡ଼ିଆ ହୋଇଥିଲା, ଏବେ ସୁଦ୍ଧା ତାହା ସେମିତି ଅଛି । ମନେ ମନେ ସେ ଦେବତା ଉଦ୍ଦେଶ୍ୟରେ ମନର କଥାଟି ଜଣାଇ ଆସୁଥିଲେ— 'ବୁଢ଼ୀ ହେଲି ମା, ନରୁଟି ଏଫ୍. ଏ. ପାସ କଲା । ଆଉ ତାର ପଢ଼ା ଦରକାର ନାହିଁ । ତା ସମ୍ପତ୍ତିବାଡ଼ି ସେ ବୁଝୁ । କୋଉଠୁ ଗୋଟିଏ ଭଲ ଝିଅ ଆଣି ଜୁଟାଇ ଦିଅ ମା, ତା ସଂସାର ସେ ସମ୍ଭାଳୁ । ମୁଁ ପୁରୁଷୋତ୍ତମ ଯିବି । ସେଇଠି ମୋ ଶେଷ ଜୀବନଟା କଟିଯାଉ । ନରୁବାପ କେତେକାଳୁ ଏକୁଟିଆ କରି ଛାଡ଼ି ଗଲେଣି ମତେ । କେତେଦିନ ଆଉ ମୁଁ ଏକୁଟିଆ ଏ ଘଣା ଟାଣୁଥିବି ? ସଂସାରରେ ଆଉ ମୁଁ ବେଶି ଦିନ ରହିବାକୁ ଚାହେଁନା ମା—କି ସୁଖ ପାଇଁ ରହିବି ! ନରୁ ବାପା କେଡ଼େ ଭଲ ମଣିଷ, କେତେ ସୁଖ ପାଉଥିଲେ ମତେ । ମା ! ତାଙ୍କୁ ହରାଇ

ଏ ନାଲଠା ଜୀବନଟାକୁ ଯେନ କେତେକାଳ ଆଉ ମୁଁ ଘୋସାରି ହେଉଥିବି ? ମତେ ମୁକ୍ତ ଦେଏ ମା ! ସେ ପୁଣି କେଉଁଠି ଜନ୍ମ ହୋଇ ମୋ ପାଇଁ ଅପେକ୍ଷା କରିଥିବେ କିନା !

ଏବେ ବି ପଦ୍ମବାସିନୀଙ୍କ ମନ ଓଦା ହୋଇ ଉଠୁଛି । ଆଖି ପାଣିରେ ଭାସି ଯାଉଛି । ସ୍ୱାମୀ ଦେବତାଙ୍କ କଥା ଭାବିଲ୍ ବେଳକୁ ପ୍ରାଣ ଭିତରେ କୋହ ଉଠୁଛି ।

"ବୋଉ" ?

ଭିତରକୁ ଚାଲି ଯାଉ ଯାଉ ଅନ୍ୟମନାଭାବେ ପଚାରିଦେଲେ ପଦ୍ମବାସିନୀ—"କଅଣ କିଛି କହିବୁ କରୁ" ?

"ହଁ ବୋଉ ! ମୋର କିଛି କହିବାର ଅଛି, ବସ" ।

"ବସିବାକୁ ବେଳ କାହିଁରେ ବାପା ? କେତେ କାମ ତ ଅଛି" ।

କାମ ବହୁତ ଅଛି ସତ । ମାତ୍ର ଅସଲ କଥା ହେଉଛି ବର୍ଷେ ହେଲା ପଦ୍ମବାସିନୀ ସବୁବେଳେ ଅନ୍ୟମନା ହୋଇ ରହୁଛନ୍ତି । ଥାଇ ନଥିଲା ପରି, ଦେଖି ନଦେଖିଲା ପରି, ଶୁଣି ନଶୁଣିଲା ପରି ସବୁବେଳେ ମନଟିକ ମାରି ଦେଇଛନ୍ତି । ଅବିରଳ ଆଖିପତା ଢଇଟା ଓଦା ଓଦା । ମୁହଁଟି ଶୁଖିଲା । ସବୁବେଳେ ଡାକ ଛାଡୁଛନ୍ତି—ମା ଚଣ୍ଡେଶ୍ୱରୀ ! ମୋତେ ଏ ଜଞ୍ଜାଳରୁ ମୁକ୍ତ ଦେ ମାଆ ! ମୁଁ ଯାଏଁ, ବିଦା ହୁଏ ! କରୁର କଅଣ ଗୋଟିଏ ବିବାହ କରିଦେ ମା !

କରୁ ପାଇଁ ବିବାହ ! କେଉଁ କଥାର ଅଭାବ ? କେତେ ବଡ଼ ବଡ଼ ଘରୁ ତ ପ୍ରସ୍ତାବ ଆସୁଛି । ହେଲେ କରୁତ ରାଜି ହେଉ ନାହିଁ । କହୁଛି 'ବି. ଏ. ପାସ କରେ ଆଗ' ।

ବି. ଏ., ଏମ୍. ଏ., ତା ପଛକୁ ଆଉ କଣ୍ଟି, ତା ପଛକୁ ଆଉରି କଣ୍ଟି । ଟିଲ୍‌ଟାର ମନଭିତରେ ଭୂତ ପଶିଚନା କଅଣ ? ମାଆର ମନକୁ ପାପ ଛୁଉଁଚି । କିନ୍ତୁ ପଢ଼ିଲା ପିଲାକୁ ଉତ୍ତର କାହିଁ ?

"ବୋଉ" ।

ଧୀରେ ଧୀରେ ଚଉକି ଖଣ୍ଡିକ ଉପରେ ବସି ପଡ଼ିଲେ ପଦ୍ମବାସିନୀ । "କଅଣ କହୁଚୁ" ?

"ହେଇଟି ନିଅ, ଏ ଚିଠି ଖଣ୍ଡିକ ପଢ଼ । ରାଧା ଲେଖିଚି ! ଦିନକ ପାଇଁ ହେଲେ ବି ଗରିବ ପିଲାଟାକୁ ତୁମେତ ଝିଅ ବୋଲି କୋଳକୁ ଟାଣି ନେଇଥିଲ । ସେ କଥା କଅଣ ଭୁଲି ଯାଉଚ ବୋଉ ? ସାନ ହେଉ ବଡ଼ ହେଉ, ଯେତେ ଯେତେ ନଈ ନାଳ କୋଳକୁ ଡେଇଁ ପଡ଼ିଲେ କି ସମୁଦ୍ର ତାର କୋଳ କାହାକୁ ମନା କରି ଦିଏ ? ବଡ଼ ଅଭାବରେ ପଡ଼ିଚନ୍ତି ସେମାନେ । ସାତ ପର ହେଲେ ବି ଆମକୁ ସେ ଆଶା କରି ଚିଠିଟି ଲେଖିଚି । ବୋଉ ! ହେ ବୋଉ ! ମନା କରି ଦିଅ ନାହିଁ । କଅଣ କରିବା କହିଦିଅ" ?

ଦୀର୍ଘ ନିଃଶ୍ୱାସ ଟାଣିଲେ ପଦ୍ମବାସିନୀ । ଚିଠି ଖଣ୍ଡିକ ଧରି ଥକ୍କା ହୋଇ ବସି ପଡ଼ିଲେ, ଚଉକି ଖଣ୍ଡିକ ଉପରେ । ଆଉ ଘରୁ ଚଷମାଟି ତାଙ୍କର ଧରିଆସି ନରୋତ୍ତମ କହିଲା— "ପଢ଼ ବୋଉ ତୁମେ ନିଜେ । ପଢ଼ିଲେ ସବୁକଥା ଜାଣିବ । କେତେ ଦୁଃଖ ତାଙ୍କର । ପଥର ହେଲେ ବି ତରଳି ଯିବ" ।

ଶୂନ୍ୟ ଆକାଶ ଆଡ଼କୁ ଚାହିଁ ରହିଲେ ପଦ୍ମାଦେବୀ । ଧୀରେ ଧୀରେ ଚଷମାଟି ଆଖିରେ ଲଗାଇଲେ । କାର୍ଡ଼ ଖଣ୍ଡିକୁ

ପଢ଼ିବାକୁ ଆରମ୍ଭ କଲେ । ପଢ଼ୁ ପଢ଼ୁ ତାଙ୍କ ଆଖିରୁ ଥପ ଥପ ହୋଇ ଲୁହ ନିଗିଡ଼ି ପଡ଼ୁଥାଏ ସେ ଚିଠିଟି ଉପରକୁ ! ଥରକୁ ଥର ତିନଥର ପଢ଼ିଲେ ସେ ଚିଠିଟାକୁ । ଟେବୁଲ୍ ଉପରେ ଥୋଇ ଦେଲେ । ନୀରବରେ ବସିପଡ଼ି ପୁଅର ମୁହଁ ଆଡ଼କୁ ଗମ୍ଭୀର ଦୃଷ୍ଟିପାତ କରି ଚାହିଁ ରହିଲେ—ପୁଅର ମନ ଭିତରେ କଅଣ ଅଛି, ଅଣ୍ଡାଳ ପକାଇବାକୁ ସେ ଚାହାନ୍ତି । ମନେ ମନେ ଦିଶିଯାଉଛି ରାଜଗୁରୁର ଭିକାରୀ ରୂପ । ଦରିଦ୍ର ଭିକାରୀ ! ଆଭିଜାତ୍ୟ ନାହିଁ । କୁଳ ମର୍ଯ୍ୟାଦା ନାହିଁ । କଅଣ କହିବେ ? ପୁଅକୁ କି ଉତ୍ତର ଦେବେ ?

"କଅଣ କୁହ ବୋଉ ? କଅଣ କରିବା" ?

ଚିଠିଟିକୁ ଆଉଥରେ ତନ୍ନ ତନ୍ନ କରି ପଢ଼ିଗଲେ ପଦ୍ମବାସିନୀ । ନାହିଁ ! କିଛି ତ ସେ ମାଗିନାହିଁ । ପଇସାଟିଏ ବି ନୁହେଁ । ସେ ଚାହେଁ ପାଖକୁ ଆସିବାକୁ । କେମିତି ଭାବରେ ଆସିବାକୁ ଚାହେଁ ସେ କଥାଟିତ ଉହ୍ୟ ରଖିଦେଇଛି ।

ସାମାନ୍ୟ ପୋଷ୍ଟକାର୍ଡ଼ ଖଣ୍ଡିକରେ କେତେ ଧାଡ଼ି ମାତ୍ର ଅକ୍ଷର । କେତେଜଣଙ୍କ ଆଖିରୁ ଲୁହ ନିଗାଡ଼ି ପକାଉଛି । କେତୋଟି ପ୍ରାଣରେ ତରଙ୍ଗ ସୃଷ୍ଟି କରୁଛି ! କଅଣ ଉତ୍ତର ଦେବେ ପଦ୍ମବାସିନୀ ? ମନ ଭିତରକୁ ପାପ ଛୁଉଁଛି । ସତେ ଆଉ କଅଣ ନରୋତ୍ତମ ତାକୁ ଭଲ ପାଇ ପକାଇଛି ? ନରୁ କଅଣ ସତରେ ଭିକାରୀ ଝିଅଟାକୁ ବୋହୂ କରି ଆଣିବାକୁ ଅନାଇ ବସିଛି !

ନୀରବ ହୋଇ ବସି ରହିଲେ ପଦ୍ମବାସିନୀ ।

ନରୁ ପାଖକୁ ଲାଗିଆସି ଗେଲେଇ ହେଲାଭଳି କହିଲା— "ଯାଉଛି ନେଇ ଆସିବି ବୋଉ । ଝିଅ କରିଛ ପରା ! ତା ପାଇଁ ତମ ମନ କଅଣ କାନ୍ଦୁନାହିଁ ବୋଉ" ?

ତଥାପି ନୀରବ, ନିଶ୍ଚଳ ହୋଇ ବସି ରହିଲେ ପଦ୍ମବାସିନୀ । ଗୃହର କର୍ତ୍ତା କର୍ତ୍ତ୍ରୀ ହେଲେ ଛାତିକୁ ପଥର କରିବାକୁ ପଡ଼େ । ନୀରବ ହୋଇ ଆଗରେ ପଡ଼ିଥିବା ଚଉକି ଖଣ୍ଡିକ ଉପରେ ବସିପଡ଼ି ଏକ ଲୟରେ କାନ୍ଥର ଗୋଟାଏ ଛବି ଆଡ଼କୁ ଅନାଇ ରହି ନରୋତ୍ତମ କଲମଟାକୁ ଧୀରେ ଧୀରେ ଦାନ୍ତରେ କାମୁଡ଼ୁଥାଏ ଏବଂ ଅନ୍ୟମନସ୍କ ଭାବେ ସ୍ୱର୍ଗ ମର୍ତ୍ତ୍ୟ ଏକତେଆଡ଼ୁ କେତେ କଥା ଭାବି ହେଉଥାଏ ।

ମନେ ମନେ ବହୁତ ବେଳ ଭାବି ପଦ୍ମବାସିନୀ ସ୍ଥିରକଲେ—ପଢ଼ୁଆ ପିଲା, ଆଜି କାଲିର ଯୁବକ । ତାଙ୍କୁ ଚାବି ପକାଇ ଅଟକାଇ ରଖିବାକୁ ଚାବି କାହାର ଅଛି ! ଶେଷକୁ କହିଲେ—

“ହଉ ତେବେ କାହାକୁ ପଠା । ତୁ ନିଜେ କାହିଁକି ଯିବୁ ? ଗୋଟିଏ ସର୍ତ୍ତରେ ତାକୁ ମୁଁ ଅଣାଇବାକୁ ରାଜି । ଏ ଘରକୁ ସେ ଝିଅ ହୋଇ ଆସିବତ, ଆସୁ । ତାକୁ ଆମେ ବାପଘର କରାଇଦେବା” ।

ଏତିକି କହି ପଦ୍ମବାସିନୀ ଉଠି ଠିଆ ହେଲେ । ଠିଆ ହୋଇ ଅଗଣା ଭିତରକୁ ମୁହଁ କରି ଚାଲିଲେ । ବାରଣ୍ଡା ଉପରେ ଅଦୃଶ୍ୟ ହୋଇ ଯାଉ ଯାଉ ଅନୁଚ୍ଚ ସ୍ୱରରେ କହିପକାଇଲେ—“କିନ୍ତୁ ଏ ଘରର ବୋହୂ ହୋଇ ଆସିବାକୁ ସେ ବୃଥା ଆଶା କରିବ ନାହିଁ । ଏ ଘରର ବୋହୂ ହେବାର ଯୋଗ୍ୟତା ତାର ନାହିଁ, କି ଏ ପରିବାରର ବନ୍ଧୁ ହେବାର ଯୋଗ୍ୟତା ତା ବାପାର ନାହିଁ । ଏଇ ଗୋଟିଏ ସର୍ତ୍ତରେ ମୁଁ ରାଜି ହେଲି ନରୁ” ।

ବୋଉ ଚାଲି ଯାଉ ଯାଉ ତଳକୁ ମୁହଁ ପୋତି ନରୋତ୍ତମ ଶୁଣାଇ ଦେଲା—“କାହାକୁ ଆଉ ପଠାଇବି ? କାଲି ମୁଁ ନିଜେ ଯାଉଚି । ମଟର ସାଇକେଲରେ କେତେ ଅବା ସମୟ ଲାଗିବ ?

ହଁ କି ନାହିଁ କହିଲେ ନାହିଁ ବୋଉ—ଚାଲିଗଲେ । ନରୋତ୍ତମ ବୁଝିଲା "ମୌନଂ ସମ୍ମତିଲକ୍ଷଣଂ" ।

ତିନି ବର୍ଷରୁ ଊର୍ଦ୍ଧ୍ୱ ହେବ । ବୋଉ ମନା କରିଥିବାରୁ ନରୋତ୍ତମ ଚିଠି ଖଣ୍ଡିଏ ସୁଦ୍ଧା ଦେଇ ନାହିଁ । ବୋଉଙ୍କର ଅବାଧ୍ୟ ହେବାକୁ ଚାହେଁ ନାହିଁ । ବୋଉଙ୍କୁ ଆଜି ସେ ରାଜିକରାଇ ପାରିଚି । ତାରି ଆନନ୍ଦ ଅନ୍ତରର ବେଳା ଲଙ୍ଘିଚି ଆଜି । ନାଚିଉଠୁଚି ତାର ପ୍ରାଣ ମନ । କାଲି ସକାଳୁ ଯାତ୍ରା କରିବ । ଖୁବ ବେଶୀହେଲେ ଘଣ୍ଟାଏ କି ଦେଢ଼ ଘଣ୍ଟାର ବାଟ । ପଚାର ପଚାର ଚାଲିଯିବ । ରାତିଟା ଆଉ କେତେ ଘଣ୍ଟା ଅବା ! ଆଗରୁ କହିଥିଲେ ହୁଏତ ଆଜି ଯିବାକୁ ବୋଉଙ୍କୁ ଅନୁମତି ମାଗି ପାରିଥାଆନ୍ତା । କିନ୍ତୁ ମୂଳରୁ ଆଶା ତ କରି ନଥିଲା ଲେଶମାତ୍ର ।

ମନ ପବନ, ଆଉ ଘୋଡ଼ା । ଚାହୁଁ ଚାହୁଁ କୁଦ ଉଠନ୍ତି । ମୁହୂର୍ତ୍ତକେ ତିନିଭୁବନ ବଣିଯାଏ କଳ୍ପନାର ଚଉପଟ୍ଟ ଉପରେ ! ପଚାଶ ପଚାଶ ହଠାତ୍ ଯାଇଁ ଦାଣ୍ଡ ଦୁଆରେ ମଟର ସାଇକଲ ବନ୍ଦକରି ପାହ୍ଚ ଉପରକୁ ଉଠିଯିବ ! ଦୁଆର ମୁହଁରେ ଡାକ ଦେବ—'ଅନୁ କବାଟ ଫିଟା' !

ଭବଲ୍ ବେଳକୁ ଯୁବକ ସ୍ମୃତି ଦୁଲୁକି ଉଠୁଚି— ମନ ପାପ ଛୁଉଁଚି । ବୋଉ ମନା କରିଦେଇଚନ୍ତି—ଅନୁକୁ ବୋହୂକରି ଆଣି ପାରିବେ ନାହିଁ ! ନୋହିଲେ ନାହିଁ । ଝିଅ ହୋଇ ଆସୁ ପଛକେ । କେଡ଼େ ସୁନ୍ଦର ଝିଅଟି । ଆର ଜନ୍ମରେ ଅତିଆପଣାର ଥିଲା ନିଶ୍ଚେ ! ଏଜନ୍ମରେ କାହାର ଅଭିଶାପ ପାଇ ଦୂରେଇ ଯାଇଚି । ଦେବକନ୍ୟା ପରି ରୂପଟା କିନ୍ତୁ ଅଭିଶପ୍ତା ! ଦୁଃଖର ବୁକୁଲାଟାକୁ

କାନରେ ବାନ୍ଧି ସତେ କି ସେ ଦୁଃଖୀ ଘରେ ଭୂମିଷ୍ଠ ହୋଇପଡ଼ିଛି !
ଯାହାହେଉ ଏଘରକୁ ଝିଅହୋଇ ଆସିଲେବି ସେ ସୁଖୀ ହେବ ?
ଆଜି ତା ସୁଖ ଶ୍ରଦ୍ଧା ଦେଖିଲେ ନରୁ ସୁଖୀ ନିଶ୍ଚୟ ହେବ ।

ମଝିରେ ବାର ଘଣ୍ଟାର ବ୍ୟବଧାନ । ଅନୁର ଚିଠିଖଣ୍ଡିକୁ ନେଇ ନରୋତ୍ତମ ଆଉଥରେ ପଢ଼ିବାକୁ ଆରମ୍ଭ କରିଦେଲା । ଧୁଏଁ ଧୁଏଁ ଗୋଟିଏ ଦୀର୍ଘଶ୍ୱାସ ଟାଣିହୋଇ ଆସିଲା ଅନ୍ତରର କେଉଁ ନିଭୃତ କୋଣରୁ । ସୁନ୍ଦର ଝିଅଟିକି ଆପଣାର କରିନେବାକୁ ମନ ବ୍ୟଗ୍ରହୋଇ ଉଠୁଛି । କିନ୍ତୁ ବାଧା ଦେଉଛି ସମାଜ ଓ ସାମନ୍ତବାଦ । ବୋଉ କଅଣ କରିବେ ? ଦୁନିଆକୁ ନେଇତ ସେ ଚଳିବେ ? ସମାଜରେ ପାଞ୍ଚଜଣଙ୍କ ଭିତରେ ତ ସେ ବସିବେ ?

ରାତିଟି ସାରା ଚିନ୍ତା ଓ ଉଦ୍‌ବେଗରେ ନିଦ ହେଲା ନାହିଁ । ଅତି ପ୍ରତ୍ୟୁଷରୁ ନିତ୍ୟକର୍ମ ସାରି ବୋଉଙ୍କଠାରୁ ବିଦାୟ ନେବାକୁ ଗଲାବେଳକୁ ତିରିଶିଟି ଟଙ୍କା ହାତକୁ ବଢ଼ାଇ ଦେଲେ ବୋଉ— "ନେଇଥା ସାଙ୍ଗରେ; ରାଜଗୁରୁଙ୍କୁ ଦେଇ କହିବୁ, ଗାଡ଼ିକରି ଝିଅଟିକି ଆଣି ପହଞ୍ଚିଯିବେ । ସେ ଏଠିକି ଆସିଗଲେ ହୁଏତ ଆମେ ତାଙ୍କ ଚଳାଚଳ ପାଇଁ କିଛି ଟଙ୍କା କରଜ ଦେବା । କିନ୍ତୁ ନିଶାଖୋର ଲୋକଟା । ଭାଙ୍ଗ ମଦତରେ ତ ଉଡ଼ାଇ ଦେବ" ।

ଘଣ୍ଟାରେ ପଦ୍ମବାସିମାନଙ୍କ ମୁହଁରେ ବିକୃତର ଛଟା ଫୁଟି ବାଲୁଚି ।

ମଟର ସାଇକଲ ଖଣ୍ଡିକ ଧରି ବାହାରି ପଡ଼ିଲା ନରୋତ୍ତମ ।

ପଢ଼ୁଆ ପିଲାକୁ ବାଟ ଅଛପା ? ମଟରସାଇକେଲକୁ କେତେ ଅବା ବାଟ ? ଦଳଖିବସନ୍ତ ଗାଁ ଦାଣ୍ଡରେ ମଟର ସାଇକେଲଟା

ନୂଆ ନୁହେଁ । ନିତପ୍ରତି ଯିବା ଧାଇଁଚି । ରାଜଗୁରୁଙ୍କ ଘରକୁ ବାଟ ପଚାରିଦେଲା ବେଳକୁ ଲୋକେ ହସୁଚନ୍ତି । ଆପଣା ଆପଣା ଭିତରେ କୁହାକହି ହେଉଚନ୍ତି—'କିଏ ରେ ବାପା ଇଏ' ?

ବରଗଛ ମୂଳେ ସାଉଁଟି ସାଙ୍ଗରେ ଦେଖା ହୋଇଗଲା । ଚିହ୍ନି ପାରି ଦଣ୍ଡବତ ହେଲା ସାଉଁଟି—'ବାବୁ ଅଜ୍ଞା କୁଆଡ଼େ' ?

ହସିଦେଇ ନରୋତ୍ତମ ପଚାରିଦେଲା—"ରାଜଗୁରୁଙ୍କ ଘର କେଉଁଠା" ?

ମୁହଁ ସୁଖାଇ ଦେଲା ସାଉଁଟି । କହିଲା—"ଏତେ ଦିନକେ ମନେ ପଡ଼ିଲା କି ବାବୁ" ?

ଈଷତ୍ ଲଜ୍ଜିତ ହୋଇ ନରୋତ୍ତମ ପୁଣି ଥରେ ପଚାରିଲା— "କେତେ ବାଟ ଆଉ ତାଙ୍କ ଘର" ?

"ହେଇଟି ଆଗରେ । ଚାଲନ୍ତୁ ଦେଖାଇ ଦେବି । କିନ୍ତୁ କିଏ ଅଛି କି ? ଅଭାବ ଓ ଦୁଃଖ ସହି ସହି କିଏ କୁଆଡ଼େ ଗଲେଣି ତାର ଠିକଣା ନାହିଁ । ଚାରିଦିନ ରାତିରୁ ପିଇସୀ ଝିଆରୀଙ୍କର ଦେଖା ନାହିଁ । ଏ ଗାଁଆରେ ଗରିବ କେହି ରହିପାରିବ ନାହିଁ ବାବୁ" ।

ଦୀର୍ଘ ନିଃଶ୍ୱାସ ଟାଣି ନରୋତ୍ତମ ଥକ୍କା ହୋଇ ଠିଆ ହୋଇ ପଡ଼ିଲା । ହାତରେ ଅଛି ବେଗଗାମୀ ଯାନଟି—ନିତାନ୍ତ ଅଚଳ ଅବସ୍ଥାରେ ଥକ୍କାମାରି ଠିଆ ହୋଇ ରହିଚି ! ଛାଡ଼ିଦେଲେ ପଡ଼ିଯିବ ।

"କୁଆଡ଼େ ଗଲେ" ?

"କହି ପାରିବ ନାହିଁ ବାବୁ ! ଶନିସପ୍ତା ଦଶା ପଡ଼ିଛି । ନଳ ରାଜାଙ୍କୁ କେତେ ଦଶା ଭୋଗାଇଲା ଜାଣ ନାହିଁ ବାବୁ ? ଶେଷକୁ ସ୍ୱାମୀ ସ୍ତ୍ରୀ ଘର ବାଡ଼ି ଛାଡ଼ି କଏ କୁଆଡ଼େ ଗଲେ । ପଅର ଦିନ ସଞ୍ଜବେଳେ ତ ଥିଲେ । କଥା କଅଣ କି— କାହାରିକି କହିବେ ନାହିଁ କି-ବାବୁ ? ଡ଼ର ମାଡ଼ୁଛି ! 'ବଡ଼ ଲୋକକୁ ଉତ୍ତର ନାହିଁ, ସ୍ୱର୍ଗକୁ ନିଶୁଣି ନାହିଁ' । ସରପଞ୍ଚ ମଦନ ବାବୁ ଏ ଝିଅଟିକି କେତେ ଦିନୁ ଆଖେଇ ଥିଲେ । ବାପକୁ ତେଣେ ବିଷ କହର ଦେଇ ମାରିଦେଇଚନ୍ତି ପରା ! କାହିଁତ କେଇ ଦିନହେଲା ତାଙ୍କର ଶବ୍ଦ ବର୍ଣ୍ଣ ଦିଶୁ ନାହିଁ ! ପଅର ଦିନ ଖରାବେଳେ ପିଇସୀକି ଆସି ଧମକାଇଲେ— ମତେ ଝିଅଟିକି ବାହା ଦେବାକୁ ରାଜି ହୋଇଯାଅ । ନୋହିଲେ ମୁଁ ତାକୁ ଟେକି ନେଇଯିବି । ବୁଢ଼ୀ ବିଚାରି ଭୟରେ ଇଆ ତା ଆଗରେ କହି ବୁଲିଲା । ସାହାଯ୍ୟ ମାଗିଲା । କିନ୍ତୁ ମଦନା ଟାଉଟରକୁ ସମସ୍ତେ ଡ଼ରନ୍ତି । କାହାକୁ କେତେବେଳେ କୋଉଁ ଖାଲରେ ପକାଇଦେବ ତାର ଠିକଣା ନାହିଁ । ସମସ୍ତେ ଯେଝା ଘରେ ଚୁପ ଚାପ ରହିଗଲେ । ହୁଏତ ରାତାରାତି ଝିଆଣି ପିଇସୀ କୁଆଡ଼କି ପଳାଇଗଲେ । ନହେଲେ ବା ମଦନା ତାଙ୍କୁ ଟେକିନେଇ କୁଆଡ଼େ ଲୁଚାଇ ରଖିଛି । ହେଇଟି ବବୁ ! ଭାରି ଡ଼ର ମାଡ଼ୁଛି ! କିଏ ଜଣେ ତେଣୁ ଆସୁଚି ! ତମ ସାଙ୍ଗରେ କଥା ହେଉଚି ବୋଲି ଜାଣିଲେ ମୋର କିଛି ଠିକଣା ରହିବ ନାହିଁ । ମୁଁ ଯାଉଚି । ହେଇଟି ସେ କୂଅ ମୂଳକୁ ବାଁ ହାତ ଉଆଁପିଣ୍ଡାଟା ଦିଶୁନାଇଁ ? କବାଟ ବନ୍ଦ ଅଛି ! କିଏ ଜଣେ ଗୁଳରୁ ବାଉଁଶରୁଅ ଟାଣି ନେଉ ନାହିଁ ? ସେଇ ଘରଟା । ଆମ ଗାଁ ନ୍ୟାୟ ହେଲା ଏଇଆ । ଗରିବଟାକୁ ଘଉଡ଼ାଇ ଦେଲେ । ଚୁ ! ଚୁ ! ଭିକାରି ପରି ବାପଝିଅ ଆଜି

ପିଇସୀଟି କଏ କୁଆଡ଼େ ଗଲେ । ଧନ ଦଇଟା ଯାଇ ନାହିଁ, ଇଏ ସବୁ ତା ଘରରୁ ବାଉଁଶ ଖୁଅ ଟାଣି ନବାକୁ ଆରମ୍ଭ କରିଦେଲେଣି” ।

ଦୀର୍ଘ ନିଃଶ୍ୱାସ ଟାଣି ନରୋତ୍ତମ ଆଗେଇ ଚାଲିଲା । କୂଅ ମୂଳକୁ ଭଙ୍ଗା ଘର ଖଣ୍ଡିକ । ଚାଳ କଣା ହୋଇ ଯାଇଚି । ଜଣେ ପଡ଼ୋଶୀ ଖୁଅ ଦି ଚାରିଟା ଟାଣି ନେଇ ଯାଉଚି । ଦାଣ୍ଡ କବାଟରେ ପ୍ରେଟ ତାଲାଟିଏ ପଡ଼ିଚି । ନରୋତ୍ତମ ପଚାରିଦେଲା—ଇଏ କାହା ଘର” ?

ବାଉଁଶ ଟଣା ବନ୍ଦ କରି ଲୋକଟି ଉତ୍ତର ଦେଲା— “କାହିଁକି ? ମୋ ଘର । ମୋର ଦଖଲ । ଭାଇ ଭଉଣୀ ଓ ଝିଅଟା —କଏ ତ କୁଆଡ଼େ ଗଲେ, ମରିହଜି ଗଲେ । ମୁଁ ତା କକେଇ ପୁଅ ଭାଇ । ଘର ବାଡ଼ିର ମାଲିକ ମୁଁ । ନିଃସନ୍ତାନ ଡ଼ିହ । କଏ କୁଆଡ଼େ ଟାଣିଟୁଣି ନେଇଯିବ ବୋଲି ମୁଁ ନେଇ ଯାଉଚି ବାଡ଼ିରେ ରଖିଦେବି । କାହିଁକି ? ତମେ କଏ ପଚାରିବାକୁ” ?

ନରୋତ୍ତମ ହସିବ ନା କାନ୍ଦିବ—କିଛି ଠିକ୍ କରିପାରୁ ନାହିଁ । ଲୋକଟା ପାଖକୁ ଲାଗିଆସି କହିଲା—“ମୋ ନାଆ ଫଗୁ ରାଜଗୁରୁ । ମୋ ବାପା କପିଳ ରାଜଗୁରୁ, ସିଂହ ରାଜଗୁରୁଙ୍କ ବାପା କୁଶେଇ ରାଜଗୁରୁଙ୍କ ଖୋଦ ଖୁଡ଼ୁତା ପୁଅ ଭାଇ ମୋ ବାପା । ତମେ କାହିଁକି ପଚାରୁଚ” ?

“ପଚାରୁଚି ଦିବ୍ୟସିଂହ ରାଜଗୁରୁ କୁଆଡ଼େ ଗଲେ ଜାଣିବା ପାଇଁ” ?

"ଓହୋ, ବଡ଼ କଥାଟାଏ ପଚାରିଲେ ବାବୁ ! ମହୋତ ଗଞ୍ଜୋଡ଼ ଲୋକଟା ଗୁଡ଼ିଏ ଛଅ ମାସ ହେଲା ତ ଦେଖା ନାହିଁ— କୁଆଡ଼େ ଗଲା କି ମଲା ତାର ଠିକଣା ନାହିଁ ! ଖାଲି ଖବରଟା ପାଇବାପାଇଁ ଆମେ ଚକେଇଚୁ । ତେଣିକି ଶୁଦ୍ଧି ହୋଇ ପଡ଼ିବ । ଆଜି ତା ଝିଅଟି ? ଯୋଉଁ ଆଚରଣ ? ବାପାଟା ତାକୁ ବନ୍ଧଗୃହ ଦେଇ ପାରିଲା ନାହିଁ । ଗାଁ ପିଲାଏ ତାର ଆଡ଼କୁ ଆଖେଇଲେ । ପିଇସୀଟା ତ ବାରବୁଲି । ଏଠି ଅଭାବରେ ପଡ଼ି ଛତରରେ ପଶିବେଣି କି ବଡ଼ଦାଣ୍ଡକୁ ଯିବେଣି । ଆମେ କି ତାଙ୍କ ଖବର ଜାଣୁ ଯେ କହିବୁଁ" ?

"କେତେ ଦିନ ହେଲା ନାମୀ ଝିଅଟିର ଗଲେଣି କହି ପାରିବ" ?

"ତମେ କିଏ ହେ, ଏତେ ଜେରା କରିବାକୁ ? ତମ ଘର କେଉଁଠି ? ତାଙ୍କର କଅଣ ହୁଅ ? ଏତେ ବଢିଆ ବନ୍ଧୁ ଥିଲ— ଆଜଯାଏଁ ପଦେ ପଚାରୁ ନଥିଲ କିଆଁ" ?

ବିରକ୍ତି ଲୁଚାଇ ପୁଣି ଥରେ ନରୋତ୍ତମ ପଚାରିଲା—"ମୁଁ କଅଣ ପଚାରୁଚି କି, ସେମାନେ କେଉଁଠି ଗଲେଣି କହି ପାରିବ କି ?

ବିରକ୍ତିଭରା କଣ୍ଠରେ କହି ଉଠିଲା ଲୋକଟା—"କେତେଦିନ ହେଲା ତ କୁଆଡ଼େ ଅନ୍ତର୍ଦ୍ଧାନ ହୋଇ ଗଲେଣି, କେଉଁଠି ବୋଲି ତମେ ପଚାରୁଚ, କଅଣ ମୁଁ କହିବି" ?

ଏତିକି କହି ହାତରେ ଧରିଥିବା ରୁଅ ଖଣ୍ଡକୁ ସେଇଠି ସେମିତି ରାସ୍ତା ଉପରେ ପକାଇ ଦେଇ ଚାଲିଗଲା ଲୋକଟା । ଗଲାବେଳେ କହି ଗଲା—"ମୁଁ ତମର ଏତେ କଥାର ଜବାବ

ଦେଇପାରିବ ନାହିଁ ହୋ ! ମୋ ନାଁ ଫଗୁ ବଜର୍‌ରୁ । ମୁଁ ତା କଟେକର ପୁଅ ଭାଇ । ନିଃସନ୍ତାନ ଉଡ଼ହରେ ମୁଁ ମାଲିକ" ।

ଦୀର୍ଘ ନିଶ୍ୱାସ ଟାଣି ମଟର ସାଇକଲଟାକୁ ପାହାଚ ତଳକୁ ଠିଆ କରାଇ ନରୋତ୍ତମ ପିଣ୍ଡା ଉପରକୁ ଉଠିଲା । ତାଲାଟାରେ ହାତ ଦେଲା କ୍ଷଣି ଖୋଲିଗଲା । କିଏ ତାକୁ ଫିଟାଇ ଥିଲା – ଭିତରେ ପଶିଥିଲା ଦେଖିବା ପାଇଁ କଅଣ ଅଟ୍ଟକ ନାହିଁ । ଯାହାବା ଥିଲା, ଲୁଟି ନେଇ ଚାଲିଗଲାଣି । ତାଲାଟାକୁ ଠେଲି ଦେଇ ଯାଇଚି । ଭିତରେ ପଶିଲା ନରୋତ୍ତମ । ଦେଖିଲା—କେହି ନାହିଁ କି କିଛି ନାହିଁ । ପିଇବା ପାଣି ଗଣ୍ଡିଏ ବି ନାହିଁ । ଭଙ୍ଗା ହାଣ୍ଡି କେତୋଟି ମାତ୍ର ଟାଙ୍ଗରାରେ ଗଡ଼ୁଚି । ପିତଳ କଂସାର ଡାଳ ଲୋଟା ବା ଥାଳୀ ତାଟିଆ କିଛିମାତ୍ର ଦିଶୁ ନାହିଁ । ଭିତରକୁ ଚାହିଁଲା ବେଳକୁ ଦୋଟି ବଡ଼ ଘରର ପଟା କବାଟକୁ କିଏ ଖସାଇ ନେଇ ପଳାଇଲାଣି । ଦେଖିଲା—ଦିନେ ଦି ଦିନ ଭିତରେ ଦୁଃଖୀର ସଂସାରଟା ସମ୍ପୂର୍ଣ୍ଣ ଛାରଖାର ହୋଇ ଗଲାଣି । ନିରେଖି ନିରେଖି ଚାରିଆଡ଼କୁ ତନ୍ନତନ୍ନ କରି ପର୍ଯ୍ୟବେକ୍ଷଣ କରିବାକୁ ଲାଗିଲା ନରୋତ୍ତମ । କାନ୍ଥରେ ଅଧାନିଭା ଚକ୍ ଖଡ଼ିର ଧାଡ଼ିଏ ଅକ୍ଷର । ତରବରରେ କିଏ ନିଭେଇ ଦେବାକୁ ଚେଷ୍ଟାକରି ଶେଷ କରିପାରି ନାହିଁ । ପରଘର ଭାଙ୍ଗିଲେ ଚୋରଙ୍କର ପଞ୍ଚମରେ ବୃହସ୍ପତି । 'କାହା ଘରେ ନିଆଁ ଲାଗିଲେ ଠକଙ୍କର କଛେ ବାଆର'—ଏଇ ହେଲା ଆଜିକାଲିକା ଗାଉଁଲି ନ୍ୟାୟ । ଅଧିକାଂଶ ଦରିଦ୍ର—ଅଭାବଗ୍ରସ୍ତ । ନ୍ୟାୟନୀତି ପ୍ରତି ଲକ୍ଷ୍ୟ କରିବାକୁ କାହାରି ଅବସର ମିଳୁନାହିଁ । ପେଟ ପିଆଳୀ ଘରେ ଲୁଚିଛପି ପଶୁଚି ଶାଗ ଖିଆଳୀ—ଯାହା ପାଇବ ଚୋରିଲୁଟି ଆଣିବା ପାଇଁ ।

"ତୁମେ ଆସିଲ ନାହିଁ ଭଉନା, ରକ୍ଷା ପାରିଲୁ ନାହିଁ । ଏ ଗାଁ ଛାଡ଼ି ଚଳାଇ ଯାଉଚୁ" ।

କାହା ଉଦ୍ଦେଶ୍ୟରେ କିଏ ଲେଖିଚି ? ନରୋତ୍ତମ ବୁଝିଲା ଲେଖିଚି ଅନୁରାଧା । କୁଆଡ଼େ ଗଲା ସେ ?

ନରୋତ୍ତମ ଦୀର୍ଘଶ୍ୱାସ ଟାଣି କବାଟଟା ଆଉଜାଇ ଆଣି ଦିନ ଦଶଟା ବେଳକୁ ପାହାଚ ତଳକୁ ଗଡ଼ିଲା । ରାସ୍ତା ଉପରେ କେହି ଗୋଟିଏ ଦେଖାଯାଉ ନାହାନ୍ତି । ପ୍ରାଣରେ ତାର ହା ହୁତାଶର ଅଗ୍ନି ହୁ ହୁ ଜଳି ଉଠୁଚି । ମନ କାନ୍ଦି ଉଠୁଚି । ଅନାଥା ନିରାଶ୍ରୟା ବାଳିକାଟି ସତେ କି କାନ୍ଦି କାନ୍ଦି ଦୂରକୁ ଚାଲି ଯାଉଚି ! ଝୁରିଆଉ ଶୁଭି ଯାଉଚି କରୁଣ ରାଗିଣୀର ମୂର୍ଚ୍ଛନା । ଏଇ ପାହାଚ ତଳେ ବାଲିରାସ୍ତା ଉପରେ ବିକଳ ହୋଇ କାନ୍ଦି କାନ୍ଦି ଗଡ଼ିଯିବାକୁ ମନ କହୁଚି । କିନ୍ତୁ ଅନୁରାଧା ତାର କିଏ ?

କିଏ ନୁହେଁ ? କିଏ ନୁହେଁ ଅନୁଟି ତାର ? କିନ୍ତୁ କିଛି ତ ତାର ଉପକାର କରିପାରିଲା ନାହିଁ ନରୋତ୍ତମ ! ଧନୀ ଘରର ଶିକ୍ଷିତ ପିଲା ହୋଇ ଏତିକି ମାତ୍ର ଶକ୍ତି ତାର ପାଇଲା ନାହିଁ ! ନିଜ ପ୍ରତି ଶତ ଅବଜ୍ଞା, ସହସ୍ର ତାଚ୍ଛଲ୍ୟ ପୋଷଣ କରି, ନିଜର ପୁରୁଷକାରକୁ ଶତସହସ୍ର ଧିକ୍କାର ଦେଇ ଦେଇ ମଟରବାଇକ୍ ଖଣ୍ଡିକ ଧରି ବିଷଣ୍ଣ ମନରେ ନରୋତ୍ତମ ଗାଁକୁ ଫେରିଲା । ବାଟଯାକ ଚତୁର୍ଦ୍ଦିଗ ଖାଁ ଖାଁ ଗୋଡ଼ାଉଚି । ପ୍ରାଣ ଭିତରେ ଅନ୍ତରାତ୍ମା ଧିମୁରି ଧିମୁରି କାନ୍ଦି ଉଠୁଚି । ବାଉଳା ଗୁଉଳା ମନ ଘେନି ନରୋତ୍ତମ ଗାଁକୁ ଫେରି ଆସିଲାବେଳକୁ ଦାଣ୍ଡ ପିଣ୍ଡା ଉପରୁ ବୋଉ ପଚାରୁଚନ୍ତି— "ଅନୁ କାହିଁ ନରୋତ୍ତମ" ?

'ଅନୁ କାହିଁ' ? ଏ କି ପ୍ରଶ୍ନ ବୋଉଙ୍କର ? ଗଲାବେଳେ ପରା କହିଥିଲେ ତା ବାପକୁ ଟଙ୍କା କଉଡ଼ି ଦେଇ ଆସି କହିବୁ ଶଗଡ଼ କରି ଆଣି ଗୁଡ଼ ଦେଇଯିବ ବୋଲି ! ଆଜି ପୁଣି ଏ କି ପ୍ରଶ୍ନ ? ବୋଉ କଅଣ ଭାବିଥିଲେ ମଟର ସାଇକେଲ ପଛରେ ବସାଇ ଅନୁକୁ ଘେନିଆସିବ ନରୋତ୍ତମ ?

ପଦ୍ମବାସିନୀଙ୍କ ବାଉଳା ମନ ଭିତରେ ଅନୁ ପ୍ରତି ଅନୁରାଗର ପରିଚୟ ମିଳିଗଲା । ନରୋତ୍ତମ ଭାବିଲା—ସତେ କଅଣ ତେବେ ବୋଉ ବି ଅନୁକୁ ଏତେ ଭଲପାଆନ୍ତି ?

"ଅନୁକୁ ଆଣିଲୁନି କାହିଁ ନରୋତ୍ତମ" !

"ଅନୁ କାହିଁ ବୋଉ" ?

ପାହାଚ ଉପରକୁ ଉଠି ଆସୁ ଆସୁ ନରୋତ୍ତମ କାନ୍ଦି-ପକାଉଛି । ତାକୁ କୋଳ ଆଉଁକୁ ଭିଡ଼ି ନେଇ ପଦ୍ମବାସିନୀ ଆବେଗଭରା, କ୍ରନ୍ଦନବାଉଳା କଣ୍ଠରେ ପଚାରୁଛନ୍ତି—ଅନୁ କାହିଁ ? କଅଣ କହୁଚୁ ନରୁ, ଅନୁ କାହିଁ ? କୁଆଡ଼େ ଗଲା ?

କହିପାରୁ ନାହିଁ ଆଉ କିଛି ନରୋତ୍ତମ । ଗଳାଟା ଫୁଲି ଉଠିଲାଣି । କଣ୍ଠ ରୁଦ୍ଧ ହୋଇଗଲାଣି । ଆଖି ଲୁହରେ ଭାସିଯାଉଛି ନରୁର ଗଣ୍ଡଦେଶ । ବହୁ କଷ୍ଟରେ ଉତ୍ତର ଦେଲା—ଅନୁ କାହିଁ ବୋଉ ? ବଡ଼ ଦୁଃଖରେ ସେ ଆଜି ତା ପିଉସୀ କୁଆଡ଼େ ପଳାଇ ଗଲେଣି । ସାଇ ଲୋକେ ତା ଘର ଭାଙ୍ଗି ନେଉଚନ୍ତି ।

କହିଁ କହିଁ ହୋଇ କାନ୍ଦିପକାଉଛି ନରୋତ୍ତମ ।

"ତା ବାପା କୁଆଡ଼େ ଗଲେଣି କି ମଲେଣି କେହି କିଛି କହିପାରୁ ନାହାନ୍ତି । ଆଗରୁ ଯିବା ଉଚିତ ଥିଲା ବୋଉ । କେତେ ଦିନରୁ ସେ ଚିଠି ଦେଇଥିଲା । ତୁମେ ମନା କଲ ମତେ" ।

"ମୋର ଭୁଲ ହୋଇଗଲା ଧନ ! ମୋର ଅପରାଧ !!
ମାଆ ଗୋ ଚଣ୍ଡେଶ୍ୱରୀ, ସେମାନଙ୍କୁ କେଉଁଠି ବଞ୍ଚାଇ ରଖ । ଘଣ୍ଟ
ଘୋଡ଼ାଇ ରଖିଥା ମା" ।

"ସେ ଆମର ଘର ନୁହେଁ ବୋଉ । ତମେ ବଡ଼ ଭୁଲ୍ କଲ ।
ମୁଁ ତମର କଥା ମାନ ଭୁଲ୍ କର ବସିଲି" !!

ମା କୋଳରେ ପୁଅ ଏବଂ ପୁଅକୁ କୋଳରେ ଧରି ମା—
ଦୁହେଁଯାକ କଅଁଳା ପିଲାଭଳି କାନ୍ଦ ପକାଇଲେ । ସତେକି ନହାନ୍ତି
ଆପଣାର କିଏ ମରି ଯାଇଚି । କିନ୍ତୁ ବର୍ତ୍ତମାନ ଆଜି ଉପାୟ
କଅଣ ?

---

## ଛଅ

"ମୁଁ କାଲି କଟକ ଯାଉଚି ବୋଉ" ।

ଚମକି ଉଠିଲେ ବୋଉ । ପଚାରିଲେ ଡାହିଁକି ? ଏବେ କଟକ ଯାଇ କଅଣ କରିବୁ ? ଛୁଟି ତ ଅଛି"......

"ଭଲ ଲାଗୁନାହିଁ । ଗାଁରେ ସାଙ୍ଗସାଥି କେହି ନାହିଁ । ତମ ଘରେ ଯେଉଁ ବଡ଼ଲୋକୀର ଅଭିମାନ ! ମଣିଷ ସଙ୍ଗରେ ମିଶିବାକୁ ବାରଣ । ଏକୁଟିଆ କେତେଦିନ ଏ କାନ୍ଥ ବାଡ଼କୁ ଅନାଇ ରହିବି ? ସହର ବଜାରରେ ଏତେ ଜାତି ବାଛନ୍ଦ ନାହିଁ । ବଡ଼ଲୋକ ଆଉ ଗରିବ । ଗରିବଙ୍କୁ ଘୃଣା କରି ତାଙ୍କଠାରୁ ଦୂରେଇ ରହିଲେ ହିଁ ବଡ଼ଲୋକଙ୍କର ବଡ଼ଲୋକୀ ଗୃଲି ବଜାୟ ରହିଲା, ନୋହିଲେ ନାହିଁ । ଏଠି ମତେ ଅଣନିଃଶ୍ୱାସୀ ଲାଗୁଚି ବୋଉ" !

ପଦ୍ମବାସିମାଙ୍କ ମନ ଭିତରେ କେଜାଣି ବାଜୁଚି । ପୁଅର କଥା ମଝିରେ କାହିଁ ଲୁଚି ରହିଚି ଗୋଟିଏ ଭାବ । ଅନୁରାଧାକୁ ପଦ ଦେବାଲାଗି ବୋଉ ବାରଣ କଲେ । ଗରିବ ବୋଲି ରାଜଗୁରୁଙ୍କ ପ୍ରତି ଘୃଣା ଓ ତାଚ୍ଛଲ୍ୟ ପ୍ରକାଶ କଲେ । ମଣିଷକୁ ଘୃଣା କଲେ ମଣିଷପଣିଆର ପରିଚୟ ମିଳେ ନାହିଁ । ପୁଅ ମାଆକୁ ଏକପ୍ରକାର ଘୃଣା କରୁଚି । ଦୂରେଇ ରହିବାକୁ ସେ ଗ୍ରହେଁ । ବଂଶ ମର୍ଯ୍ୟାଦା ଓ ବୃଥା ଅହମିକା ଲାଗି ମନେ ମନେ

ଲଜ୍ଜିତ ହୋଇ ପଦ୍ମବାସିନୀ ଆଧୁନିକ ଶିକ୍ଷିତ ପୁଅ ପାଖରେ ସେ୍ରଟିଆ ହୋଇଯାଉଚନ୍ତି । ତଥାପି ପୁଅର ମନଟାକୁ ଆଉଥରେ ଟିକେ ପରଖି ନେବାଲାଗି କହିଲେ—"ଆରେ ବାବୁ, ଯିବୁତ ଯିବୁ, ଦିନ କେଇଟା ଯାଉ । ମଉସା ତୋର ଚିଠି ଲେଖିଚନ୍ତି—ବସନ୍ତପୁର ଆଚାର୍ଯ୍ୟଙ୍କ ଘରୁ ପୁଣି ଦିନ କଏ ସବୁ ଆସିଚନ୍ତି । ଘର ବର ଦେଖି ଯିବେ । ବୈଶାଖରେ ବାହା । ଫଟୋ ଖଣ୍ଡିଏ ପଠାଇଚନ୍ତି । ସୁନ୍ଦର ଝିଅଟିଏ । ମେଟ୍ରିକ ପଢ଼ିଚି । ମୁଁ ତ ଲେଖି ଦେଇଚି ସେମାନଙ୍କୁ, ଆସିବାକୁ କହିବାକୁ । ତୁ ଚାଲିଗଲେ ମୁଁ ଅସତ୍ୟ ହୋଇଯିବି ସିନା" ?

ପୁଅ ଉପରେ ପଦ୍ମବାସିନୀଙ୍କର ପୂର୍ବ ପରି ଆଉ ଜୋର ପାଉ ନାହିଁ । ମନ ଦବିଯାଇଚି । ଅପେକ୍ଷା କରି ରହିଲେ—ପୁଅ କଅଣ କହିବ ବୋଲି । କିନ୍ତୁ ନରୋତ୍ତମ ହସି ଉଠିଲା ବୋଉଙ୍କ କଥାରେ । କହିଲା—"ଆସିବେ ? ଭଲ କଥା । ତମେତ ଜବାବ ଦେଇଚ । ଘର ଦେଖି ଯିବେ । ସେ ଗୋଟାଏ ଫଟୋ ପଠାଇ ଦେଇଚନ୍ତି ତ—ତମେ ଖଣ୍ଡେ ଫଟୋ ଦେଖାଇ ଦେବ । କାମ ସରିଲା । ତେଣିକି ସେ ଆଉ ତମେ ଯାହା ଠିକ୍ କରିବ । ମୋଠେଇଁ କଅଣ ଅଛି" ?

ଛଳଛଳ ଆଖିରେ ଚାହିଁ ରହିଚନ୍ତି ପୁଅ ଆଡ଼କୁ ପଦ୍ମବାସିନୀ । ପୁଅ ହସୁଚି । ହସ ପଛପଟେ ଲୁଚି ଛପି ଦିଶି ଯାଉଚି କାନ୍ଦଣାର ରୂପ । ମନର କଥା ପ୍ରକାଶ ପାଉନାହିଁ, କିନ୍ତୁ ମନେମନେ ଜଣା ପଡ଼ିଯାଉଚି ।

"ମୁଁ କାଲି କଟକ ଯାଉଚି ବୋଉ । ଦୁଏତ କଲିକତା ଅରେ ବୁଲିଯିବି । ମୋର କିଛି ଟଙ୍କା ଦରକାର ଅଛି—ଦବ" ?

ମା ଗୃହିଁ ରହିଲେ ପୁଅ ଆଡ଼କୁ । ପଚାରିଲେ—କେତେ ଟଙ୍କା ?

"ଶହେ ଦ'ଶ ଟଙ୍କା" ।

ମନେ ମନେ ପଦ୍ମା ଓଜନ କଲେ କଥାଟାକୁ । ଭାବିଲେ ହୁଏତ ପୁଅ କୁଆଡ଼େ ବାଇ—ବାଉଳାପରି ଘୁରି ବୁଲିବ — ଅନୁରାଧାକୁ ଖୋଜିବା ପାଇଁ । ଦୀର୍ଘ ନିଃଶ୍ୱାସ ଟାଣିଲେ । ପୁଅଆଡ଼କୁ ଅନାଇ ରହିଲେ । ମୁଣ୍ଡ ଭିତରଟା ଘୁରିଗଲା । ଅନୁରାଧା, ରାଧି, ଗରିବର ଝିଅଟି, ତା'ପାଇଁ ନରୋତ୍ତମର ମନ ଝୁରି ହେଉଚି । ଧନୀ ଆଭିଜାତ୍ୟ ଘରର ଝିଅକୁ ସେ ପସନ୍ଦ କରେ ନାହିଁ । ପଚାରିଲେ— "ଫଟଟା ଦେଖିବୁ" ?

କ୍ଷୁଦ୍ର ଉତ୍ତର—"ଦରକାର ନାହିଁ । ତମେ ତ ଦେଖି ଠିକ୍ କରୁଚ" !

'ଆଉ ଦରକାର ନାହିଁ' । ପ୍ରସ୍ତାବଟା ଏତିକରେ ଇତି ହେଉ । ପଦ୍ମବାସିନୀ ମନେ ମନେ ସ୍ଥିର କଲେ — କଟକର ମଉସାଙ୍କ ପାଖକୁ ଚିଠି ଦେଇ ଜଣାଇ ଦେବେ 'ଆଶା ନାହିଁ' । ଅନ୍ଧମିକାରେ ବୁଢ଼ ମସ୍ତବଡ଼ ଭୁଲଟାଏ କରି ବସିଚନ୍ତି । ମା ଚଣ୍ଡେଶ୍ୱରୀଙ୍କର ମନରେ ଯାହା ଥିବ ।

× × × ×

ମାସ ଗୋଟିକ ପରେ ରାଜଗୁରୁଙ୍କ ଡିହ ଉପରେ ବଲୁଆ ଢେଉଁଚି । ସାତ ପୁରୁଷର ଘର ଖଣ୍ଡେ ଏଠି ଠିଆ ହୋଇଥିଲା; ତା'ର ପ୍ରମାଣ ସୁଦ୍ଧା ନାହିଁ । ପାହାଚର ପଥର କେତେଖଣ୍ଡି ମଧ୍ୟ ଅନ୍ତର୍ଦ୍ଧାନ ହୋଇଗଲାଣି । ରାତି ସେତେବେଳକୁ ଅଧାଅଧି ।

ଆକାଶରେ ମଳିନ ଜହ୍ନ—ଧାପ ଜଳୁଚି । ଦେହରେ ମଇଳା ଲୁଗା ଓ ମଇଳା ଫତେଇଟାଏ, କାନ୍ଧରେ ଖଣ୍ଡେ ଗାମୁଛା, ମୁହଁରେ ବଢ଼ିଲା ଦାଢି ନିଶ—କିଏ ଜଣେ ଡ଼ିହ ଉପରକୁ ଉଠି ଭୂତପରି ଠିଆ ହେଲା । ମୁଣ୍ଡ ଘୁରିଯାଉଚି । ବାରି ପାରୁନାହିଁ ଏଠି ଘର ଖଣ୍ଡେ ଥିଲା କି ନାହିଁ । ମଡ଼ିଆ ଧଡ଼ିଆ ଲୋକଟାଏ । ଗୋଲାପ ବେକକୁ ଥରି ଥରି ହୋଇ ଥରି ଉଠୁଚି । ଗୋଡ଼ଆଡ଼କୁ ଗୋଡ଼ି ମୁଣ୍ଡରେ ହାତ ଦେଇ ବସି ପଡ଼ିଲା । କେହି କୁଆଡ଼େ ଦିଶୁନାହିଁ । ସତେ କଅଣ ଏଇଟା ତାଙ୍କର ଘର ଥିଲା ! କୁଆଡ଼େ ଗଲେ ପିଇସୀ ଝିଅଟା ? କୁଆଡ଼େ ଉଡ଼ିଗଲା ଘରଗୁଡ଼ାକ ? ଖଣ୍ଡିଆ କାନ୍ଥ କେଇପଟ ଛିଡ଼ା ହୋଇଚି ସିନା, ଗୋଲାପର କୁଟା ଖିଅଟି ପର୍ଯ୍ୟନ୍ତ ଦିଶୁ ତ ନାହିଁ ! କୁଆଡ଼େ କିଏ ବୋହି ନେଇଗଲା ?

ରାଜଗୁରୁ ଢଳିପଡ଼ିଲେ ଭୂଇଁଟା ଉପରେ—ଶୋଇଗଲେ । କିନ୍ତୁ ନିଦ ତ ଆସୁନାହିଁ ଆଖିକି ! ଏଇ ଘରେ ଏଇ ଡ଼ିହଟି ଉପରେ ପିତାମ୍ବରୀ ବିଦାୟ ନେଇଗଲା । ସାନ ଛୁଆ ଅନୁରାଧାଟିକୁ ମଣିଷ କଲା ନାମୀ ମନୋରମା । ପିତାମ୍ବରୀ ଛାଡ଼ିଗଲା । ଶିଖା ଭୁଟିଗଲା । ମୁଣ୍ଡ ବିଗିଡ଼ିଗଲା । ମନ ପାଗଳ ହୋଇଗଲା । ସଂସାରଟା ଛାରଖାର ହେଲା—ହାୟ ପିତାମ୍ବରି ତୁ ଗଲୁ, ମୋର ସୁନାର ସଂସାରଟାକୁ ଛାରଖାର କରି ଗଲୁ !

ଶୋଇ ଶୋଇ ଶୂନ୍ୟ ଆକାଶ ଆଡ଼କୁ ଅନାଇ 'ବିକଳ ହୋଇ କାନ୍ଦି ଉଠୁଚନ୍ତି ରାଜଗୁରୁ ! ଅନୁଚ୍ଚ ସ୍ୱରରେ ଆପଣାକୁ ଆପେ କହି ପାଉଚନ୍ତି—'ପିତାମ୍ବରୀ ମଲା । ମତେ ଜୀଅନ୍ତା ମାରିଦେଇ ଗଲା । ଝିଅଟାକୁ ମୋର କିଏ କୁଆଡ଼େ ନେଇଗଲା ?

ମୁଁ ଚଣ୍ଡାଳ ପରସାଙ୍ଗରେ ନଶା ଖାଇ ମାସ ଗୋଟାଏ ପାଗଳ ହୋଇଗଲି । ବୁଢ଼ୀ ନାମଟାକୁ କିଏ କୁଆଡ଼େ ମାରି ପୋତି ପକାଇଲା ? ମୋ ଘର ଦ୍ୱାର ଭାଙ୍ଗି ଲୁଚି କିଏ ତାଡ଼ି ନେଇଗଲା । ଏ ସବୁ କଲା—ମଦନା ତ୍ରିପାଠୀ । ତା କୁଳ ବୁଡ଼ୁ, ତା'କୁଳ ବୁଡ଼ୁ, ତାର ସର୍ବନାଶ କର ପ୍ରଭୁ । ମୁଁ ଗରିବ ଲୋକ, କିନ୍ତୁ କାହାରିକି କିଛି ପାରିବି ନାହିଁ । ଯାଉଚି, ମୁଁ ବି କାଲି ତାରି ନାଆଁରେ ନଈ ପୋଖରୀକି ଡେଇଁ ପଡ଼ିବି । ମୁଁ ଆଉ ଏ ନିଲଠା ଜୀବନଟାକୁ ଧରି ବଞ୍ଚି ରହିବି କାହିଁକି ? ଯାଉଚି, ଚାଲି ପୀତାମ୍ବର ! ଚାଲି ମୁଁ ଯାଉଚି । ତୁ ସେଠି ମୋ ବାଟକୁ ଅନାଇ ରହିଚୁ ? ଆଜ୍ଞା ହଉ, ଉଠିଲି, ଏ ଗାଁର ସମସ୍ତଙ୍କର ମଙ୍ଗଳ କର ଭଗବାନ' ।

ଥରି ଥରି ଉଠିଲା ଲଙ୍କଗୁରୁ । ଥରିଥରି ଢ଼ିହ ତଳକୁ ଓହ୍ଲାଇ ଆସିଲା । ଥରି ଥରି ଗମ୍ଭୀର ବାଟକୁ ପାଦ ବଢ଼ାଇଲା— 'ଯାଉଚି ଚାଲି ପୀତାମ୍ବର, ! ତୁଇ ଯାଇଚୁ; ମୋର ସର୍ବନାଶ କରି ଯାଇଛୁ; ମତେ ଏଥର ନେଇଯା । ଆଉ ବଞ୍ଚିରହି ପାରିବି ନାହିଁ' !

ଟଳି ଟଳି ଚାଲିଚି ଆଗକୁ ।

"ମୋ ଝିଅ, ମୋ ନାମ, ମୋ ରାଧା । ଆ ହାଃ ହାଃ ! ମୋ ଅନୁ ! କୁଆଡ଼େ କିଏ ନେଇଗଲା ମା ? କେମିତି କୋଉଠି ତୁ ଅଛୁ ମା ? ଆ ତୁ ମଦନା ଛଆଡ଼ । ଟଗ୍ର ଡ଼କେଇତ, ଚୋର କାମ ଇଏ ? ତତେ ମୁଁ ଜୀବନରେ ମାରିଦେଇ ଥାଆନ୍ତି । ଫାଶୀ ପଡ଼ିକେ ପାଇଲେ ପାଇଥାଆନ୍ତି । କିନ୍ତୁ ପାରିବି ନାହିଁ । ବହିରେ ମୋର ତାକତ ନାହିଁ । ବିଷ ଦେଲୁ

ତୁ ମତେ ! ଧୂତୁରା ବିଷ ! ମୁଁ ବୋଲି ବଞ୍ଚିଲି । ଧୂତୁରା ବିଷ !! ଅନ୍ୟଥା, ଭୂତ ହୋଇ ତତେ ମୁଁ ଆକ୍ରମଣ କରିବି । ତୋ ବଂଶ ନିପାତ କରିବି । ତୋ ଉଦରରେ ବାଲୁଆ ଉଡ଼ାଇବି । ତୋ ଛାତି ଉପରେ ଚଢ଼ି ଜଭ ଉପାଡ଼ି ପକାଇବି । ତୋ ତଣ୍ଟି ଉପରେ ଚଢ଼ି ରକତ ଶୋଷି ପିଇବି ରେ ମଦନା !

ତୀବ୍ର ଉତ୍ତେଜନାରେ ଗମ୍ଭୀର ବଳରେ ଢଳି ପଡ଼ିଲେ ବୃଦ୍ଧ ରାଜଗୁରୁ । ଲମ୍ବି ପଡ଼ିଲେ ଚଟ୍ କାଠଟା ଉପରେ ଲମ୍ବ ହୋଇ ।

ଆଖି ବୁଜିଟା ଅଜ୍ଞାନତାରେ ବୁଜି ହୋଇପଡ଼ିବା ପୂର୍ବରୁ ରାଜଗୁରୁ ଅନୁଚ୍ଚସ୍ୱରରେ କହି ଉଠିଲେ—"ମାଆରେ ମୋର, ଅନୁରାଧା ! କୁଆଡ଼େ ଗଲୁ ? କିଏ ଚଣ୍ଡାଳ କୁଆଡ଼େ ତତେ ଲୁଚାଇ ରଖିଚି ମା !

× × × ×

ଗୁଣ୍ଡିଚା ଘରର ପାଖକୁ ବଡ଼ ଦାଣ୍ଡର ଶରଧାବାଲି ଉପରେ ରାସ୍ତାର ଗୋଟାଏ କଡ଼କୁ ବସି ପଡ଼ିଚନ୍ତି ବୁଢ଼ୀ ମନୋରମା । ଭୂଇଁ ଉପରେ କାନି ପାରି ଶୋଇ ପଡ଼ିଚି ଅନୁରାଧା । ରୁଖ ରୁଖ ହାଲିଆ, ଅଖିଆ ଅପିଆ, ଶୋକ ଦୁଃଖ ଓ ଚିନ୍ତାରେ ଶୁଖି ଝାଉଁଳି ଝଡ଼ ପଡ଼ିଲାପରି ଦିଶୁଚି । ନିତାନ୍ତ ନିରାଶ୍ରୟା ପିଇସୀ ଝିଆରୀ ଦୁହିଁଟି । ରାକ୍ଷସ ମଦନ ତ୍ରିପାଠୀ ଭୟରେ ରାତିଅଧ ସରିକି ଘୋର ଅନ୍ଧକାର ଭିତରକୁ ଭଗବାନଙ୍କ ନାମ ସ୍ମରଣ କରି ଡେଇଁ ପଡ଼ିଚନ୍ତି ପିଇସୀ ଝିଆରୀ ଦୋହିଯାକ । ନିଘୁଞ୍ଚିଆ ପଳାଇ ଆସିଚନ୍ତି ପ୍ରାଣଭୟେନ । ବାଟଯାକ ପେଟ ପାଇଁ

ଇଆ ତା ଦୁଆରେ ହାତ ପତାଇଚନ୍ତି । ଟୋକାଏ ଚାହିଁ ଟାପରା କରିଚନ୍ତି । ବୁଢ଼ା ବୁଢ଼ୀ ମୁହଁରେ ଭୁଞ୍ଜା ଆହା କରିଚନ୍ତି । ଘରୁଆ ଘରେ ବାନ୍ଧୁଣୀ କରି ରଖିବାକୁ ଝିଅଟିକ ଡାକିଚନ୍ତି । ବୁଢ଼ୀକି ଅକର୍ମା ଦୁର୍ବଳିଆ ଦେଖି କେହି ରଖିବାକୁ ଇଚ୍ଛା ପ୍ରକାଶ କରି ନାହାନ୍ତି । ଦୋ'ଟିକି ପୋଷିବାକୁ କେହି ରାଜି ହୋଇନାହାନ୍ତି । ବଢ଼ିଲା ଝିଅକୁ ଅସହାୟ ଲୋକ ସଙ୍ଗରେ ଧରିଲେ ପଦେ ପଦେ ବିପଦ । ଯୁଆନ ଝିଅଟିକି ଦେଖି ଠାଆକୁ ଠାଆ ଲୋକଙ୍କ ଜିଭରୁ ଲାଳ ବହୁଚି । ମଣିଷ ଭିତରର ପଶୁ ଖାଇବି ଖାଇବି ଗୋଡ଼ାଇ ଆସୁଚି । ବାଟରେ ରାତି କଟାଇବା ମହା ବିପଦ । ପିଲାଟିକି କୋଳ ପାଖରେ ଶୁଆଇ ସାରା ରାତି ଜାଗି ବସିଚନ୍ତି ମନୋରମା । ବେଳେ ବେଳେ ଇଏ ସେ ବଳେ ପଶି ପଚାରି ଯାଉଚନ୍ତି—ଶୋଇଲଣି ମାଉସୀ ? ଏଇଠିଟାରେ ରହିଲ ? ଆସୁନ ଆମ ଘରକୁ ?

ଉପରେ ପଡ଼ି ଡାକୁଚନ୍ତି । ଡାକିବା ପଛରେ ଲାଳସା ଲୁଚି ରହିଚି । କି ବିପଦ ! ବଢ଼ିଲା ଝିଅ, ତରଳା ଘିଅ । ପାଖରେ ରଖି ହୁଏନାହିଁ । ପୁଣି ଗରିବ ଦେଖିଲେ କିଏ କଅଣ ଯେ କହୁଚି ତାର ତ ଠିକଣା ରହୁ ନାହିଁ ।

ଶରଧା ବାଲି ଉପରେ ଅନୁ ଶୋଇ ପଡ଼ିଚି । ମନୋରମା ଜାଗିବସି ଭାବୁଚନ୍ତି—କୁଆଡ଼େ ଯିବେ ? କେଉଁଠିକି ନେଇ ଏ ପିଲାକୁ ସେ ସାଇତିବେ ! ବାରି ବାଟ—ଗଲା ଲୋକେ ଅନାଇ ଦେଇ ଯାଉଚନ୍ତି । ପଦେ ଦିପଦ ପଚାରିଦେଇ ଯାଉଚନ୍ତି ।

"କୋଉଠି ତମ ଘର ମାଉସୀ" ?

"କୋଉଠିକି ଯାଉଛ" ?

ମନୋରମା କାହାକୁ ଉତ୍ତର ଦେଉଚନ୍ତି—କାହାକୁ ଉତ୍ତର ଦେଉ ନାହାନ୍ତି ।

ମନେ ପଡ଼ିଲା—ଗଙ୍ଗାମାତା ମଠ କଥା । ନଜପାଇଁ ସିନା ଆଶ୍ରୟ ମିଳିବ । ପିଲାଟାକୁ ନେଇ କେମିତି ସେଠି ପହଞ୍ଚିବେ—ମଠ-ବାଡ଼ି କାରଖାନା । ମହନ୍ତ ଅଛନ୍ତି, ଚେଲା ବି ଅଛନ୍ତି । ବାର ଲୋକେ ଆସୁଚନ୍ତି, ଯାଉଚନ୍ତି । କାହା ମନ ଭିତରେ କଅଣ ଅଛି କିଏ ଜାଣିଲା ?

ଧର୍ମଶାଳା ? ସେଠି ଖାଇବେ କଅଣ ? କେଇଦିନ ବା ରହି ହେବ ସେଠାରେ ?

ଅନାଥାଶ୍ରମ ? ସେଠି କଅଣ ଝିଅଟାକୁ ଏକୁଟିଆ ଛାଡ଼ି ହେବ ? ଛାଡ଼ିଲେ ସେ କଅଣ ରହି ପାରିବ?

ପ୍ରହରାଜଙ୍କ ଘରକୁ ଚିଠି ଲେଖିଲେ ହୁଅନ୍ତା ? କିନ୍ତୁ ରାଧା କହୁଥିଲା ଚିଠି ସେ ଦେଇଥିଲା ବୋଲି । କେହି ତ ଆସିଲେ ନାହିଁ ! କାହିଁକି ସେମାନେ ଆସିବେ ? ବଡ଼ଲୋକ ସେମାନେ । ଗରିବ ଅନାଥାକୁ ପଚାରିବେ କାହିଁକି ?

ଧୀରେ ଧୀରେ ଦିନ ଗଡ଼ିପଡ଼ୁଚି । ସୂର୍ଯ୍ୟ ଗଡ଼ି ପଡ଼ୁଚନ୍ତି ପଶ୍ଚିମ ଆଡ଼କୁ । "ଉଠ୍ ଲୋ ରାଧା, ଉଠ୍, ଯିବା" ।

ଉଠୁନାହିଁ ଅନୁରାଧା । ଅଜ୍ଞାନ ହୋଇ ପଡ଼ିଚି । ହାତ ଧରି ଉଠାଇଲା ବେଳକୁ ଏପଟ ସେପଟ ଗଡ଼ି ଯାଉଚି । ଉଁ କି ଚୁଁ ଜବାବ ଦେଉ ନାହିଁ । ଦୀର୍ଘ ନିଃଶ୍ୱାସ ଟାଣି ବୁଢ଼ୀ ଭାବିହେଲା—ବଡ଼ ବିପଦ ! ବଞ୍ଚିଲା ଝିଅଟି ପାଇଁ ଭଗବାନ କି ବିପଦ

କରୁଛନ୍ତି କେଜାଣି ! ମତେ କାହିଁକି ଏମିତି ଧାଡ଼ୁଛନ୍ତି ? ଅକର୍ମା ବୁଢ଼ୀଟା ମୁଁ, ଏ ସମ୍ପଦକୁ ଜଗି ରଖିବି କେମିତି ? ଦୁନିଆରେ କାହାକୁ ବିଶ୍ୱାସ ଅଛି ? ଗରିବ ଘରର ଝିଅ ବୋଲି କେହି ତ ତାଙ୍କୁ ଗ୍ରହଣ କରିବାକୁ ନାରାଜ । ମଦନ ତିଆଡ଼ି ବୁଢ଼ା ରାକ୍ଷସଟାଏ । ତାରି ଭୟରେ ଏଠିକି ତ ପଳାଇ ଆସିଲି । ଏଠି କଣ ତା'ଭଳି ଅଧର୍ମୀର ଅଭାବ ଅଛି ?

ବୁଢ଼ୀ କାତର ସ୍ୱରରେ ଡ଼ାକି ଗୁଡ଼ୁଛନ୍ତି—ହେ ଭଗବାନ, ଏକୁ ରକ୍ଷା କର । ମତେ ରକ୍ଷା କର । ଗୋଟିଏ କାହାକୁ ଆଣି ଯୁଟେଇ ଦିଅ । ମୁଁ ଏ ଜଞ୍ଜାଳରୁ ମୁକ୍ତି ପାଏଁ ।

"କି ଗୋ, ତମେ ଏଠି ? ସାଙ୍ଗରେ କିଏ" ?

ଚହ୍ଲା ମାତା—ମନ୍ଦାକିନୀ । ବୟସ ଷାଠିଏ ହେବ । ହାତରେ ମାଳା ଝୁଲୁଚି, ମୁଣ୍ଡରେ ତିଳକ ଚିତା, ଦେହରେ ଗେରୁଆ ବାସ । ପାଖରେ ଠିଆ ହୋଇ ଡ଼ାକୁଛନ୍ତି—ଆସ ଉଠି । ଏଠିଟାରେ କିଆଁ ? ସଞ୍ଜ ହୋଇ ଆସୁଚି ଯେ !

"ଏକୁ ନେଇ କେଉଁଠିକି ଯିବି ମା" ?
"କିଏ ଇଏ" ?
"ମୋ ଝିଆରି" ।
"ସାଙ୍ଗରେ ଆଉ କିଏ ଆସିଚି" ?
"କେହି ନାହିଁ" ।

"ଆସ ମଠକୁ । ମୁଁ ସବୁ ବିଚାର କରିଦେବି । ପିଲାଟାକୁ ପାଖରେ ରଖିଥାଅ । ପରେ କିଛି ଗୋଟାଏ ସ୍ଥାୟୀ

ବନ୍ଦୋବସ୍ତ କରିଦେବା । ସେଇ ହତଭାଗୀ ଝିଅଟା ନା ? ଚନ୍ଦ୍ରଭାଗାରେ ଯିଏ ହଜି ଯାଇଥିଲା ? ଯାହାକୁ ଖୋଜି ଖୋଜି ସେଥର ତୁମେ ଆସିଥିଲ ?

"ହଁ ଗୋ ମା, ସେଇ ଝିଅଟି" ?

ଆଉ କିଛି କହି ପାରୁନାହାନ୍ତି ମନୋରମା, କାନ୍ଦି ପକାଉଛନ୍ତି ।

ହାତଟିଏ ଧରି ଉଠାଇଲେ ମନ୍ଦାକିନୀ ମାତା ।—ଉଠ, ଝିଅଲୋ ଉଠାଅ । ଗତଟା ପାଇଁ ଅନ୍ତତଃ ଆଶ୍ରାମର ବିବାଦ କରନାଅ । ମଠକୁ ତ କେତେ କୁଆଡ଼ୁ ଝିଅ-ବୋହୂ ଆସି ଆଶ୍ରୟ ନେଉଛନ୍ତି । ଏ ପିଲାଟା କଥା ଏମିତି କାହିଁକି ଅଧିକା ହୋଇଗଲା ?

ଅନୁରାଧା ଉଠୁ ନଥାଏ । ଟାଣି ଟାଣି ଉଠାଇଲେ । ଦୁର୍ବଳତାରେ ଟଳି ଟଳି ପିଉସୀ-ଝିଆରୀ ମନ୍ଦାକିନୀ ପଛେ ପଛେ ଚାଲିଲେ ଗଙ୍ଗାମାତା ମଠକୁ ।

---

## ସାତ

କେଉଁ ଗଙ୍ଗାମାତା ଏ ମଠ ସ୍ଥାପନ କରିଥିଲେ । ଆରାଧ୍ୟ ଦେବତା ରାଧାଗୋବିନ୍ଦ ମୂର୍ତ୍ତି । ସମ୍ପତ୍ତିବାଡ଼ି ଜମେଇ ଯାଇଚନ୍ତି ଗଙ୍ଗାମାତା, ନିଜର ଶକ୍ତି ବଳରେ । ତୁଳସୀ ବଣ ପାଖକୁ ଲମ୍ବା ଧାଡ଼ିଟିଏ ଯାତ୍ରୀ ଘର । ଅତିଥି ଅଭ୍ୟାଗତ ଆଶ୍ରୟ ନିଅନ୍ତି ଓ ଗଲାବେଳକୁ କେହି କିଛି ଦେଇଯାଏ । କେହି କେହି ଅବା ଅଭ୍ୟାଗତ ଭାବରେ ପ୍ରସାଦ ସେବା କରେ । ଅନ୍ୟ ଆଡ଼କୁ ହତା ଭିତରେ ସଂସ୍କୃତ ଟୋଲଟିଏ । କେତୋଟି ପିଲା ସଂସ୍କୃତ ପଢ଼ନ୍ତି । ପଢ଼ାନ୍ତି ମହନ୍ତଙ୍କ ଚେଲା । ଯୁବକ ପୀତବାସ ବାବା—ଆଚାର୍ଯ୍ୟ ପାସ୍ କରି ଆସିଚନ୍ତି ସେ । ମହାଜନମ ମାତାଙ୍କ କୁଟୀର ପାଖକୁ ମନୋରମାଙ୍କ କୁଡ଼ିଆ । ଅନୁରାଧା ପିଉସୀ ସାଥିରେ ଥାଏ । ତୁଳସୀ ବଣ ଭିତରେ ପଶି ଫୁଲ ତୋଳେ, ଫୁଲ ଗୁନ୍ଥେ, ଠାକୁରଙ୍କ ପାଇଁ ପଠାଇଦିଏ । ଏକା ଥିଲାବେଳେ ନିଜ କଥା, ବାପ କଥା, ବୋଉ କଥା ଆଉ ପଦ୍ମବାସିନୀ କଥା ଭାବି ହୁଏ । ନରୋତ୍ତମ କଥା ଭାବିଲା ବେଳକୁ ମୁହଁଟା ଗମ୍ଭୀର ହୋଇଯାଏ । ଅଭିମାନରେ ଫୁଲି ଉଠେ । ରାଣ ପକାଇ ଡାକିଥିଲା । କିନ୍ତୁ ସେ ଆସିଲେ ନାହିଁ । ଏତେ ଅନୁନୟ କରି ନିଜର ଦୁଃଖ କଥା ସେ ଲେଖିଥିଲା, କିନ୍ତୁ ବୃଥାରେ ଲାଞ୍ଛିତ ହେବାହିଁ ସାର ହେଲା ସିନା ! ସେ ତ ଆସିଲେ ନାହିଁ !

ଆସିଲେ ନାହିଁ ! ଆସିବେ ବା କାହିଁକି ? ସେ ତ ବଡ଼ ଲୋକର ପିଲା ! ଛାଡ଼ ତାଙ୍କ ଚିନ୍ତା । ମନଟା କିନ୍ତୁ ଛାଡ଼ି ତ ପାରୁନାହିଁ !

× × × ×

"ମୁହଁଟାକୁ କାହିଁକି ତୁ ସବୁବେଳେ ହାଣ୍ଡିପରି କରି ରଖିଚୁ କ ଝିଅ" ?

ପତ୍ନୀରୁ ଚନ୍ଦ୍ର ମନୋରମା । ସେତେବେଳକୁ ସେ ପାକ୍ଷା ନେଇ ମାତା ରୂପ ଧରିଲେଣି । କେବଳ ଗୋଟିଏ ମାତ୍ର ଚିନ୍ତା । କେମିତି ଏ ପିଲାଟାକୁ ପରହସ୍ତକ କରାଇଦେଲେ ନିଶ୍ଚିନ୍ତ । କିନ୍ତୁ ଚିନ୍ତା ତ ଛାଡ଼ୁନାହିଁ ଅନୁ ମନରୁ !

କାହିଁକି ଏମିତି ସବୁବେଳେ ଭାବି ହେଉଚୁ ମା ? ମୋଠାରୁ ତୋ କଥା ତୁ କଅଣ ବେଶୀ ଭାବୁଚୁ ? ମୁଁ ତ ଅଛି, ତୁ କଣ ଭାବୁଚୁ ? ଦଉଚି ମୁଁ ତତେ ଦାନ କେଇଟା ଭିତରେ ପରଗୋଷୀ କରି । ମୁଁ ବି ନିଶ୍ଚିନ୍ତ ହେବି; ତୁ ବି ନିଶ୍ଚିନ୍ତ ହେବୁ । ମାଆ ମଲା, ବାପା କୁଆଡ଼େ ଗଲା । ଘର ଗଲା, ଦୁଆର ଗଲା, ମୁଁ ବି ସଂସାର ଛାଡ଼ି ସନ୍ୟାସିନୀ ହେଲିଣି । କେବଳ ତତେ ବିଦାୟ କରିଦେଲେ ମୁଁ ନିଶ୍ଚିନ୍ତ ହେବି ।

ତଳକୁ ମୁହଁ କରି ଦି ଆଖିରୁ ଦି ଧାର ଲୁହ ଗଡ଼ାଇ ପକାଉଚି ଅନୁରାଧା । ଭାବୁଚି—ନନ୍ଦୁ ଭାଇନା କୁଆଡ଼େ ଗଲ ତୁମେ ? କୁଆଡ଼େ ଲୁଚି ରହିଲ ?

ମନ ଝୁରୁଚି, ଝୁରି ହେଉଚି ସେ !

ମନୋରମା ଅନ୍ତର ମନକଥା ସତେକ ଜାଣି ପାରୁଚନ୍ତି । କହିଲେ—କାହାକଥା ଏତେ ଭାଳ ହେଉଚୁ ମା, ସେ ବଡ଼ ଲୋକର ପିଲା । ତୁ ଢ଼କାଙ୍ଗର ଝିଅ । ବାମନ ହୋଇ ଚନ୍ଦ୍ରକୁ ପାଇବାକୁ ଆଶା କରୁଚୁ କାହିଁକି ମା ? ଶୁଣିଲେ ଲୋକ ହସିବେ । ଅସମ୍ଭବ କଥାଟାକୁ ପାଇବୁ ବୋଲି ଚାହିଁ ବସିଚୁ କାହିଁକି ମା ? ତୁ କଅଣ ପାଗଳୀ ହେଲୁ ?

× × × ×

"ପାଗଳୀ ହେଲ ଭଉଣୀ, ଏ ସୁଯୋଗ ଛାଡ଼ିବାର ନୁହେଁ । ଝିଅଟା ମନା କରୁଚି କଅଣ ? ସଂସାର ବିଷୟରେ ତାର କି ଜ୍ଞାନ ଅଛି ? ଭଦ୍ରଲୋକ ଯାହା କହୁଚି ସେ କଥା ମୋ ମନକୁ ବେଶ୍ ପାଇଚି । କାଲି ସେ ପାତ୍ର ନିଜେ ଆସିବ । ଟଙ୍କା କଉଡ଼ି କିଛି ଦେଉଚି । ନିଅ ରଖ । ଝିଅଟିକି ଉଠାଇଦିଅ । ଉଠାଇ ଦେବ କଅଣ, ନିଜେ ନେଇଯାଅ, ଭାଙ୍ଗଘର, ତାଙ୍କ ଚଳାଚଳ ଦେଖି ଛାଡ଼ି ଆସିବ । ତେଣିକି "ଦେଲି ନାଶ, ହେଲି ପାର" । ସୁଖରେ ରହିବ ଝିଅଟି । ମୁଁ ନିଜେ ପାତ୍ରଟିକି ଦେଖିଚି । କହୁଚି—କୋଠାଘର ଅଛି; ସମ୍ପତ୍ତି-ବାଡ଼ି ଅଛି, ଅଭାବ ଭିତରେ ଯାହା ଅନୁମାନ କରୁଚି—ହୁଏତ ଦୋବାହା ହୋଇଥିବ । ବୟସ ତ କିଛି ବେଶୀ ନୁହେଁ । ମୁଠିଏ ଖାଇପିଇ ଭଲରେ ଚଳିଗଲେ ହେଲା । ବାପ ନାହିଁ, ମାଆ ନାହିଁ, ଦେବା ନେବା କିଛି ନାହିଁ । ଘର ଦୁଆର ନାହିଁ, କଅଣ ଦେଖି କେଉଁ ରଜାପୁଅ ଧାଇଁ ଆସିବେ ଭଲା କହିଲ" ?

ମନୋରମା ଭାବୁଚନ୍ତି, ଭାବ ହେଉଚନ୍ତି । ଭାବନାର ଅତଳ ଜଳ ଭିତରେ, କୂଳଥଳ ପାଉନାହାନ୍ତି । ମନ୍ଦାକିନୀ

ହାତଧରି ଉଠାଇଲେ । କହିଲେ—ତା ଭାଗ୍ୟରେ ସୁଖ ଥିଲେ ତାରି ଘରେ ଇଏ ସୁଖ ପାଇବ ଭଉଣି । ରାଧା-ଗୋବିନ୍ଦ ତାଙ୍କୁ ବହୁତ ଦୁଃଖ ଦେଲେଣି । ଆଉ ଦୁଃଖ ଦେବେ ନାହିଁ ।

ତହିଁ ଆରଦିନ ସକାଳୁ ଗାଧିଆ ଗାଧିଆ ସାରି ଅନୁରାଧା ପିଣ୍ଡା ଉପରେ ଫୁଲ ଗୁନ୍ଥୁଚି । ଡ଼ାଲି ଭିତରର ଫୁଟିଲି ଫୁଲଟି ପରି ସେ ବି ସୁନ୍ଦର । ଚମ୍ପାକଳି ଭଳି ଅଙ୍ଗୁଳି ଗୁଡ଼ିକରେ ଫୁଟନ୍ତା ଚମ୍ପାଫୁଲ କେଇଟାକୁ ଗୁନ୍ଥି ଯାଉଚି ରାଧା । ଫୁଲ ଡ଼ାଲିରେ କେତେ ଗୁଡ଼ିଏ କୁନ୍ଦଫୁଲ । କିନ୍ତୁ ସେ ଶୋଭାକୁ ବଳି ପଡ଼ୁଚି ଅନୁରି ନଖପଙ୍‌କ୍ତିର ଶୋଭା । ଶତଦଳର ଦଳନିନ୍ଦୀ ଆଖିଯୋଡ଼ିକ ଭିତରେ କଳା ଭଅଁରର କଳାଡ଼ୋଳା ଦୁଇଟି ଅନୁକ୍ଷଣ ଟୋକି ବୁଲୁଚି । ମନୋରମା ତୁଳସୀ ବଣ ଭିତରୁ ମଞ୍ଜରି ତୋଳି ଆଣୁଚନ୍ତି । ମନ୍ଦାକିନୀ ମାତା ପିଣ୍ଡାଉପରେ ତିଳକ କରୁ କରୁ କହି ଉଠିଲେ— ହେଇ ଗୋ ଭଉଣି ! ଅଇଲେଣି ସେମାନେ ।

ଆଗରେ ଭଦ୍ରଲୋକଟି ଏବଂ ପଛକୁ ଅର୍ଦ୍ଧନତ ବଦନରେ ଜଣେ ଯୁବକ । ଯୁବକ ବୋଲି କହିହେବ ନାହିଁ । ପ୍ରୌଢ଼ ବୋଲି କହିହେବ ନାହିଁ । ଶ୍ୟାମଳବର୍ଣ୍ଣ, ସୁଗୋଲ ସୁପୁଷ୍ଟ । ବୟସ କେତେ ଠିକ୍ ଅନୁମାନ କରିହେଉ ନାହିଁ । ତେବେ ପଚିଶି ଉପରେ ତିରିଶି ତଳେ—ମନୋରମା ଅନୁମାନ କରିନେଲେ । ଅନୁରାଧା ବି ଅନାଇ ଦେଲା । ପିଉସୀ ଆଉ ମନ୍ଦାକିନୀ ମାତା ବି ଏଦିନ ହେଲା କଥାବାର୍ତ୍ତା ହେଉଚନ୍ତି, ସେ କଅଣ ଶୁଣୁନାହିଁ ? ମନଭିତରେ କିଏ ଜଣେ ରହିରହି ଭାଳହେଉଚି ନରୋତ୍ତମ କଥାଟିକ । କିନ୍ତୁ କାହିଁକି ପୁଣି ତାଙ୍କ ଚିନ୍ତା ! ସେ ତ ଧରା ଦେବାର ବସ୍ତୁ ନୁହେଁ । ଆକାଶ କୁସୁମ ସେ, ଇନ୍ଦ୍ରଧନୁ ପରି ।

କେତେଦିନ ଆଉ ତାଙ୍କ ବାଟ ଚାହିଁ ରହିବ ଅନୁରାଧା ! ମାଁ ନାହିଁ ବାପ ନାହିଁ । ବୁଢ଼ୀ ପିଉସୀଟା ତାକୁ ଧରି ଅତି ଅସୁବିଧାରେ ପଡ଼ିଛି । ସେ ଯାହା କରୁଛି ଠିକ୍ କରୁଛି । ଭଗବାନଙ୍କ ଇଚ୍ଛା ପୂର୍ଣ୍ଣ ହେଉ ।

ଅନୁ ବି ମନଟାକୁ ଦୃଢ଼ କରି ନେବାକୁ ଚେଷ୍ଟା କରୁଛି । କିନ୍ତୁ ଫୁଲଗୁଚ୍ଛା ଗୁଡ଼ ଉଠି ଯାଉନାହିଁ । ଜାଣୁଛି ସବୁକଥା । କିନ୍ତୁ ଜାଣି ନପାରିବାର ଛଳନା କରି ଅବଜ୍ଞା ଦେଖାଉଛି ମାତ୍ର । ଦୁଇଜଣଯାକ ଭଦ୍ରଲୋକ ତାର ସେଇ ଶୁଭ୍ର ସୁଗୋଲ ରୂପମଞ୍ଜରୀ ଆଡ଼କୁ ଏକ ଦୃଷ୍ଟିରେ ଅନାଇ ରହିଚନ୍ତି । ମନ୍ଦାକିନୀ ଡାକନେଲେ ପିଣ୍ଡା ଉପରକୁ । ମନୋରମା ବସିବାକୁ ଆସନ ଖଣ୍ଡିକ ପାରିଦେଲେ । ଭଦ୍ରଲୋକ ମନୋରମା ଆଡ଼କୁ ଅନାଇ କହିଲେ—ମନ୍ଦାକିନୀ ମାଉଙ୍କୁ ଆମେତ ସବୁକଥା କହି ସାଇଚୁ । ଏଉଟି ହେଲେ ପାଣ । ଗୃଲ ମାଉ, ତୁମେ ନିଜେ ସାଙ୍ଗରେ ଯିବ । ଆମ ଘରଦ୍ୱାର ଗୃଲଚଳନ ଦେଖି ଆସିବ । ଖାଲି କଥା ହେଲା— ଆମ ସେପଟେ ପାଣିର ଅଭାବ । ତୁମ ଜ୍ୱାଇଁଙ୍କର ଅଭାବ କିଚ୍ଛି ନାହିଁ, କୌଣସି କଥାରେ । ଝିଅଟି ତମର ମହା ଆନନ୍ଦରେ ରହିବ । ହେଇଟି ନିଅ ମାଉ, ତମ ବାଟଖରଚ ପାଇଁ ତମ ଜ୍ୱାଇଁ କିଚ୍ଛି ପ୍ରଣାମୀ ଦେଉଚନ୍ତି ।

ଭଦ୍ରଲୋକ ଥଳୀଟିରେ ପୁଳାଏ ନୋଟ ଆଗେଇ ଦେଲେ ମନୋରମା ଆଡ଼କୁ । ମନ୍ଦାକିନୀ କହି ଉଠିଲେ—ନିଉନା କାହିଁକି ମାଉ ? ତୁମେ କଅଣ ରଖିବ ? ତୁମର ଝିଅକୁ ତ ଦେବ । ବାଟଖରଚ ଯାହା ଦରକାର କରିବ । ହେଲା କଅଣ ସେ ଦେଲେ ?

ସେ ତ ତୁମର ପୁଅ । ଦେବେ ନାହିଁ କାହିଁକ ? ଆଗେ ଦେଲେ କଅଣ, ପଛେ ଦେଲେ କଅଣ ?

ମନୋରମାଙ୍କ ହାତ ଆଗେଇ ଆସୁନାହିଁ । ଜୋଇଁ ନଜେ ତାଙ୍କ ହାତକୁ ଥଳିଟି ଗୁଞ୍ଜି ଦେଲେ ।

ସେଇଠି ସେମିତି ଫୁଲଗୁଚ୍ଛା ପାଖରେ ବସିରହି ଅନୁରାଧା ଏଣିକ ଗୃହୁଁଚ । ମନଟା ଭିତରେ ଭିତରେ କହି ଉଠୁଚ—ଛି ! ଟଙ୍କା ଯାଚୁଚନ୍ତ କାହିଁକ ? ହଜାର ଖୋଜ ଖୋଜ ଯାହାକୁ ବର ପାଇବଟିଏ ମିଳୁ ନାଇଁ, ତାକୁ ଇଏ-ଟଙ୍କା ଥଳୀଟାଏ ଯାଚ ଦେଉଚନ୍ତ କାହିଁକ ?

କାହିଁକ ? ଏଇ ହେଲା ସନ୍ଦେହ । ସନ୍ଦେହର ଗୋଟିଏ ମାନ୍ଦ ବନ୍ଦ ଘୁର ଘୁର, ଚଅଁର ଚଅଁର ସାଗ ମନଟି ଭିତରେ ମାଡ଼ିଯାଉଚ । ତଥାପି ଅନୁରାଧା ଉଠିଯାଉ ନାହିଁ । ମନ ତାର ଗ୍ରହଣ କରୁନାହିଁ । ପରସ୍ଥିତି ବାଧ କରୁଚ । ରହିରହି ଦୀର୍ଘ ନିଃଶ୍ୱାସଟିମାନ ଟାଣୁଚ ସେ । ବସି ରହିଚ ସେଇଠାରେ ।

ପାଖ ଚମ୍ପା ଗଛରେ ଖର ଖର ଫୁଲ । ତୀବ୍ରବାସନାରେ ଗୋଟିଏ ହେଲେ ଭଅଁର ପାଖ ପଶୁ ନାହାନ୍ତ । ଅନୁରାଧା ସେଆଡ଼କୁ ଅନାଇଲା । ମନ— ଦୃଢ଼ କରନେଲା । ମତେତ କେହି କଛି ପଚାରୁନାହିଁ । ଟଙ୍କାଥଳ ଦେଖି ନାମାର ମନ ଭୁଲିଯାଉଚ ପର ! ମହାକାମୀ-ମାତା ମଧ୍ୟସ୍ଥ ସାଜନ୍ତି । ତାର ବ୍ୟବସାୟ ହୁଏତ ଏଇଆ । ବରପକ୍ଷକୁ ଓଅପକ୍ଷ ସଙ୍ଗରେ ଯୋଡ଼ାଯୋଡ଼ି କର ସେ ବୋଧହୁଏ ଦୁପଇସା ପାଉଚ । ଟଙ୍କାପ୍ରତି କାହାର

ଆଶା କାହିଁ ? ହେଲେ, ବଡ଼ହେବ ମୁଁ । ମୁଁ ବଡ଼ହେଲେ ସିନା ! ମତେତ କେହି କହୁ ପଛରୁ ନାହିଁ ।

ମନର ଚକ୍ରବାଳରେଖା ଉପରେ ନୂଆ ଆଲୁଅ ଦିଶିଯାଉଚ ନରୋତ୍ତମ ଭାଇନା । କିନ୍ତୁ ସାଙ୍ଗେସାଙ୍ଗେ ଅନ୍ଧକାର ଘୋଟି ଆସୁଚ । ଆଶା କାହିଁ ? ବ୍ୟବଧାନଟା ଅସୀମ ସାଗରଠାରୁ ବଳି ।

ଅନୁରାଧାର ମନ ଭିତରେ ହଠାତ ପରିବର୍ତ୍ତନ ଦେଖା ଦେଲା । ଭାବିଲା—ନାନୀ ଠିକ୍ କରୁଚନ୍ତି । ଝିଅପିଲା ବଢ଼ିଗଲେ ଗୁରୁବୋଝ ପରି ଅଭିଭାବକଙ୍କ ଉପରେ ଲଦିହୋଇ ପଡ଼ନ୍ତି । ଅସହାୟ ବୁଢ଼ୀଟି ତା ଦାୟିତ୍ୱ ନେଇ କେତେଦିନ ସମ୍ଭାଳିବ ?

× × ×

ଆଗଭର ହୋଇ ମନ୍ଦାକିନୀ କହିପକାଇଲେ—ହଉ ପୁଅ, କଥାଟା ଠିକ୍ ହେଲା । କଅଣ କହୁଚ ଭଉଣି ? କେବେ ଯିବ ? ଏକାଥରକେ ଝିଅଟିକି ନେଇ ଚାଲିଯିବ । ତାଙ୍କ ସମ୍ପତ୍ତି ତାଙ୍କଘରେ ଥୋଇଦେଇ ଆସିବ । ଘରଦ୍ୱାର ଦେଖିବ । ସାଇପଡ଼ିଶାଙ୍କୁ ଚିହ୍ନିବ । ତେଣିକି ତାଙ୍କ ସଂସାର ସେମାନେ କରୁଥାଆନ୍ତୁ ।

ଅନେକ ବେଳ ଭାବିଲା ମନୋରମା । ଆଗରେ ଥିଲାଟି ପୁଆ ହୋଇଚ । ସଙ୍ଗରେ ଆସିଥିବା ଲୋକଟି କହି ଉଠିଲା—ଦୁଇଶହ ଅଛି ।

ଦୁଇଶତ ଟଙ୍କା ! ମନୋରମା କେବେ ଏତେ ଟଙ୍କା ଦେଖି ନଥିଲ । ଭାବିଲ—କଥା ପକାଇବାକୁ ଆସି ପ୍ରଣାମୀ ରୂପେ ଦଶ ଟଙ୍କା କଏ ଦେଇପାରୁଚ, ତାର ଅବସ୍ଥା ନିଶ୍ଚୟ ଭଲ । ଆଉ କଅଣ ଦେଖିବାକୁ ଯିବ ?

ପ୍ରକାଶ୍ୟରେ କହିଲ—ଏଗୁଡ଼ାକ କାହିଁକି ମତେ ଦଉଚ ପୁଅ ? ମୁଁ ତ ସବୁ ଛାଡ଼ିଛୁଡ଼ି ଦେଇ କାଳିଆର ଶରଣ ପଶିଲଣି ।

ମନ୍ଦାକିନୀ ଟଙ୍କା ଥଳିଟିକ ଟେକି ନେଇ ମନୋରମାର ଶେଯ ଉପରେ ଥୋଇଦେଇ ଆସି କହିଲେ—ତାଙ୍କ ଧନ ତାଙ୍କୁ ଦେବ, ତୁମେ କଅଣ ଖାଇଯାଉଚ ? ଖାଲି ବିଶ୍ବାସ ଜନ୍ମାଇବା ପାଇଁ ପଠାଇଚନ୍ତି । ହଉ, ଆଉ ସେ ସବୁ କଥା । କେବେ ଯିବ—କହିବଟି ?

ମନୋରମା ଆଙ୍ଗୁଠି ଗଣିଲେ—ସୋମ, ମଙ୍ଗଳ, ବୁଧ । ହଉ, ତେବେ କଥା ରହିଲ—"ମଙ୍ଗଳ ଗତ ବୁଧ ପାହାନ୍ତି" । ବୁଧବାର ଦିନ ପାହାନ୍ତାରୁ ଯାତ୍ରା କରିବା । ତାଙ୍କ ଧନ ତାଙ୍କ ଘରକୁ ଯାଉ । ମୋ ଉପରୁ ବୋଝ ଖଲାସ ହେଉ ।

ମନ୍ଦାକିନୀ କହି ଉଠିଲେ—

'ହରିବୋଲ । ହରି ହରି ବୋଲ,
ମା ମଙ୍ଗଳା ମଙ୍ଗଳ କରନ୍ତୁ' ।

ପୋଇଁଙ୍କ ନାଁ ଧନେଶ୍ବର ଦାଶ । ଘର, କଟକ ଜିଲ୍ଲାର ବଟିଗି ମୌଜାରେ । ପୁରୀଠାରୁ ରେଲଗାଡ଼ିରେ ଜଗତପୁରଯାକେ

ଯାଇ ସେଠୁଁ ମଠରେ ଧରିବାକୁ ହେବ । ମୋଟେ କୋଡ଼ିଏଟି ମାଇଲ ବାଟ । ଗାଁ ମୁଣ୍ଡକୁ ଦାଶଙ୍କ କୋଠା—ଝୋଇଁ ମେଟ୍ରିକ ପାସ ।

ଶୁଣିକରି ଅନୁର ଛାତି ଚମକି ଉଠିଲା ! ନାରୀ ଜୀବନରେ ଏହାହିଁ ସବୁଠୁ ବଡ଼ ପରିବର୍ତ୍ତନ ଘଟାଏ । ପରଘରକୁ ଯିବାକୁ ହେବ । ପର ମନଦେଇ ଚଳିବାକୁ ପଡ଼ିବ । ହୁଏତ ପରଘରେ ଦାସୀପୋଇଲପରି ଚଳିବାକୁ ହେବ । ନୋହିଲେ ମାଲିକ ସାଆନ୍ତାଣୀର ଆସନରେ ବସିପଡ଼ିବ । ସବୁ କଥା ରହିଲା ଅନୁକୂଳ ପରିସ୍ଥିତି ଉପରେ ଏବଂ ଭାଗ୍ୟ ଉପରେ ।

କହି ଉଠିଲେ ମହାଲକ୍ଷ୍ମୀ—ଭାଗ୍ୟ, ଭାଗ୍ୟ, ଭାଗ୍ୟ । ଏମିତିଆ ଯୋଗ ଭାଗ୍ୟରେ ଥିଲେ ମିଳେ ମାତା । ତୁମ ଚିନ୍ତା କାଲିଆ ନିଜ ମୁଣ୍ଡ ଉଁପରକୁ ଉଠେଇ ନଉଛି । ଆଜି କାଲିଆ ପାଖରେ ଜବାବଟା ପକ୍କା ହୋଇଯାଉ ।

"ସେହିକଥା ମୁଁ କହୁଥିଲି ମା । ସ୍ନାନ ମଣ୍ଡପ ଉପରେ ନାମ ମାଳା ଟେକିଦେବେ । ଆମେ ଭୋଗ ମହାପ୍ରସାଦର ବ୍ୟବସ୍ଥା କରୁଛୁଁ । ତେଣିକି ଯୋଇଁ ତାଙ୍କର, ଝିଅ ତାଙ୍କର; ମୁଁ ଚାଲିଯିବି" । ଏତିକି କହିଉଠିଲା—ସଙ୍ଗରେ ଆସିଥିବା ଭଦ୍ରଲୋକ ଜଣକ ।

ସ୍ନାନ ମଣ୍ଡପ ଉପରେ ସବୁ ପକ୍କା ହୋଇଗଲା । କିନ୍ତୁ କଚା ରହିଗଲା ଅନୁରାଧାର ମନ ଭିତରଟା ।

ଜଡ଼ଭରତ ପାଲଟିଗଲା ଅନୁରାଧା । ଭାବି ଚିନ୍ତି କିଛି ଗୋଟାଏ ସ୍ଥିର କରିବାକୁ ଶକ୍ତି ନାହିଁ କି ସାମର୍ଥ୍ୟ ନାହିଁ ।

ବାପା ନାହିଁ, ମାଆ ନାହିଁ ଯେ ଭଲମନ୍ଦ ବାଛିବେ । ନାନା ବିଗ୍ଭର ହଟହଟା ହେଉଚି । ବୋହୂ ଉଠ ।

× × × ×

ଉଠିଲ । ରେଳ ମଟରରେ ବୋହୂ ଆସି ବଟିଗ୍ରାମରେ ପହଞ୍ଚିଲା । କଣ୍ଢ ଫାଲଟି ଯାଇଚି ଅନୁରାଧା । ଗ୍ଭଲିଲେ ଗ୍ଭଲୁଚି, ବସିଲେ ବସୁଚି । ଖା' କହିଲେ ଖାଉଚି, ଯାଆ କହିଲେ ଯାଉଚି । ନାନା ଆସିଚି ସାଙ୍ଗରେ କନ୍ୟାଦାନ କରାଇବା ପାଇଁ । ଭଉଣୀକୋଇଁ ଧନେଶ୍ୱର ଦାଶ ବାଟ ଖରଚତକ ହାତରୁ କମାଇ ପଟେ ଗାଣ୍ଠି ବାନ୍ଧିଆଣି ନିଜ ଗୁହାଳରେ ପୂରାଇ ଦେଲେ । ତିନି ଗ୍ଭରି ବଖରା କଚ୍ଚା-ପକ୍‌କା ଘର—ଅର୍ଥାତ୍ ଉପର ଛପର, କାନ୍ଥ ପକକା । ଚଟାଣ ମେଜିଆ ସିମେଣ୍ଟରେ ତିଆରି । ଖଳାରେ ଧାନ ଗଦାଟିଏ । ଘଞ୍ଜା ଭିତରେ ବିଧବା ଭାଉଜ ଓ ଛଅ ସାତ ବର୍ଷର ଝିଅ ପିଲାଟିଏ । ପିଲାଟି ଭାଉଜକୁ ବୋଉ ବୋଲି ଡାକୁଚି । ଧନେଶ୍ୱର କହିଲେ—ଭାଇନା ମରିଯାଇଚନ୍ତି । ଏଇଟା ସମ୍ପତ୍ତିର ମାଲିକ ମୁଁ । ଏଇଟି ତାଙ୍କ ଝିଅ ।

ବିଧବା ଭାଉଜଙ୍କୁ ବୟସ ପଚିଶି ଛବିଶି ହେବ । କଥାବାର୍ତ୍ତା ଓ ଗ୍ଭଲିଚଳନରୁ ଏ ଘରର ପ୍ରକୃତ କର୍ତ୍ତ୍ରୀ ସେଇ ବୋଲି ଅନୁମାନ ହେଉଚି । ବଡ଼ ଗ୍ଭଲାକ ଚତୁର । ହସି ହସି ଅନୁରାଧାର ହାତ ଧରି ଭିତରକୁ ନେଇଗଲା । ଅନୁମାନ କରି ମନୋରମାର ଗୋଡ଼ ପାଖରେ ମୁଣ୍ଡି ଆଟାଏ ମାରି କହି ଉଠିଲା—ମୁଁ ତମର ବଡ଼ ଝିଅ ମା ।

ଗ୍ଭହୁଁ ଗ୍ଭହୁଁ ଢ଼ାଳେ ପାଣି ଆଣି ବୁଢ଼ୀର ଗୋଡ଼ ଦିଇଟାକୁ ଧୋଇ ପକାଇଲା । କେମିତି କଅଣ କଲେ ବଣୁଆ ହାତୀ

ଖେଦା ଭିତରେ ପଶି ପୋଷା ମାନବ—ସେ ସବୁ କୌଶଳ ଶିଖା ଦିଆ ଯାଇଥାଏ ପୋଷା ହାତୀକ—ବହୁତ ଆଗରୁ ।

ବୁଢ଼ୀର ମନ ବୋଧ ହୋଇଗଲା ।

କିନ୍ତୁ ଚାଲିଚଳନରୁ ଅନୁରାଧା ଅନୁମାନ କରିନେଲା ଦୋଷର କଥା । ବୟସରେ ଦିଅରଟି ଭାଉଜଠାରୁ ବଡ଼ । ଘରେ ଆଉ ମୁରବୀ କେହି ନାହିଁ । ତେବେ ଅନୁରାଧାକୁ ବାନ୍ଧି ଆଣିବା କଅଣ ଦରକାର ଥିଲା ? ସେ ତ ଦୁଃଖେସୁଖେ ତା ଦୁଃଖରେ ଥିଲା ।

ଧନେଶ୍ୱର ଓ ଭାଉଜ ଗୋଟାଏ ଘରେ ଫୁସ୍‌ଫୁସ୍ ହେଉଛନ୍ତି । ଅନୁରାଧା ମନଟିକୁ ମାରିଦେଇ ଆରଘରେ ବସିରହି ଆଖି ଲୁହ ହାତ ପିଠିରେ ପୋଛୁ ଭାବୁଛି—"ନରୁ ଭାଇନା କଅଣ ସତରେ ପାସୋରି ଦେଲେ" ?

## ୫୦

ପାସୋର ଦେଇନାହିଁ ନଚ୍ଚୁ ଭାଇନା । ଘରୁ ବାହାର ହାତରେ ଝଙ୍କା ପୁଳାଏ ଧରି କଟକ, ଭୁବନେଶ୍ବର, କଲିକତା ଓ ପୁରୀ ଖୋଜି ଖୋଜି ବୁଲୁଚି । ଶେଷକୁ ଗଙ୍ଗାମାତା ମଠର ଚମ୍ପା ଗଛ ମୂଳଟିରେ ଚକା ପଥର ଖଣ୍ଡିକ ଉପରେ ବସିପଡ଼ି ପଚାରିଲି— କଅଣ କହୁଚ ମାତା, ମନୋରମା ନାମ୍ନୀ କୁଆଡ଼େ ଯାଇଚନ୍ତି ସତକରି କୁହ । ଅନୁରାଧା କୁଆଡ଼େ ଗଲା ? ରାଜଗୁରୁଙ୍କ ଖବର କଅଣ ?

ମନ୍ଦାକିନୀ ଡ଼ାଲାଟି ଧରି ଫୁଲ ତୋଳୁଥିଲେ ଏବଂ ହସି ହସି କହି ଯାଉଚନ୍ତି—

> 'କରି କଉଡ଼ି ଥାଏ ମୂହିଁ,
> ମୋ ବିନୁ ଅନ୍ୟ ଗତି ନାହିଁ' ।

କାହିଁକି, କାହାପାଇଁ ଏତେ ଭାବ ହେଉଚ ପୁଣି ? କର୍ତ୍ତାର ଇଚ୍ଛା ପୂର୍ଣ୍ଣ ହେଉଚି । ତୁମେ ଧାଉଁଚ କାହିଁ, ସେ ଯାଉଚି କାହିଁ ? ଆଜକୁ ସାତଦିନ ହେଲାଣି ପୁଅ ! ମନୁମାତା ରାଧାକୁ ନେଇ ତା ଶାଶୁ ଘରକୁ ଯାଇଚନ୍ତି । ଇଆରି ଭିତରେ ବିବାହ ହୋଇଥିଲା । ଅନୁର ବାହା ବଢିଗଲାଣି ।

"କୋଉ ଗାଁ ମାତା ? ବର ପାଣ୍ଟିର ନାଆଁ କଅଣ" ?

ମୁହଁଟାକୁ ନରୋତ୍ତମ ଆଡ଼କୁ ବୁଲାଇ ଆଣି ମନ୍ଦାକନ୍ନୀ ଜବାବ ଦେଲେ—ତୁମେ ଶୁଣି ଫଳ କଅଣ ? ଯିବ ତାଙ୍କ ଘରକୁ ? କାହିଁକ ? ତା ଭାଗ୍ୟ ଯେମିତି ସେ ଚାଲିଗଲା । ଯାଉ ସୁଖରେ ଜୀବନ କାଟୁ ।

ନରୋତ୍ତମ ନୀରବରେ ଭାବିବାକୁ ଆରମ୍ଭ କଲା—ବାସ୍ତବିକ ଅନୁରାଧା କାହାକୁ ବାହା ହେଲା, କେଉଁ ଗାଁଆରେ ବାହା ହେଲା, ଏ ଖବର ନେଇ ସେ କଅଣ କରିବ ? କାମ ତ ସରିଲାଣି । ଏଣିକି ସେଠି ଯାଇ ପହଞ୍ଚିଲେ ଲୋକେ ହସିବେ ଏବଂ ଅନୁରାଧାକୁ ଅପମାନ ଦେବେ, ସେ ତ ତାର ନିଜର ନୁହେଁ । ଗରିବ ସେ, ଆଉ ବଡ଼ ଲୋକର ଝିଅ ଇଏ । କୋଣାର୍କଠାରୁ ଗୋଟାଇ ନେଇ ନିଜ ଘରେ ରଖିଥିବା କଥାଟା ଲୋକେ ଜାଣିଲେ ଭଲ ତ ଭାବିବେ ନାହିଁ, ବରଂ ଭାବିବେ ଅନୁ ସାଙ୍ଗରେ ଇଆର ଭିତରି ଭାବ ଥିଲାରୁ ଖୋଜି ଖୋଜି ଉଣ୍ଡି ଉଣ୍ଡି ଆସି ପହଞ୍ଚି ଯାଉଛି ତା ଶାଶୁ ଘରେ । ଫଳରେ ଅନୁ ହେବ ଲାଞ୍ଛିତ । ଫାଇଦା କିଛି ହେବ ତ ନାହିଁ ।

ଦୀର୍ଘ ନିଃଶ୍ୱାସଟିଏ ଟାଣିଲା ନରୋତ୍ତମ—ହାୟ ! କେତେକର ସେ କରିଥିଲା—ରିଣ ପକାଇଥିଲା, ତାର ଭୁଲ କଅଣ ? ନରୁ ଆସିପାରିଲା ନାହିଁ ଅନୁକୁ ପଚାରିବାକୁ । ତିନି ଚାରି ବର୍ଷ ଅନେଇ ବସିଲା । କେତେ ଦୁଃଖ କଷ୍ଟ ସହିଲା, ଆଉ କଅଣ କରିଥାଆନ୍ତା ? ଭାବି ଭାବି, ମନ-ଗହ୍ୱର ଭିତରେ ପୁରୁଣା ଘଟନା ସବୁକୁ ସମ୍ଭାଳି କରି ନିରାଶା ଓ ନିସ୍ପୃହତାକୁ ପୁଟୁଳି ବାନ୍ଧି ଘରକୁ ଫେରିଯିବ ବୋଲି ନରୋତ୍ତମ ସ୍ଥିର କଲା । ଆଜି ରାତି ଗାଡ଼ିରେ ଫେରିଯିବ ! ବୋଉ ତେଣେ ଦକ ଦକ ହେଉଥିବେ । ପୁରୀକି ଆସି ମନସ୍କାମନା ତାର ପୂର୍ଣ୍ଣ ହୋଇଗଲା—ପୂରା ବିଫଳତାର ମରୁଭୂମିରେ । ମନ

ଭିତରଟା କୁହୁଳୁଚି, ସନ୍ତୁଳି ହେଉଚି, ଘାଣ୍ଟି ଚକଟି ହେଉଚି । ସବୁ ଦୋଷ ବୋଉଙ୍କ ମୁଣ୍ଡ ଉପରେ ଲଦିଦେଇ ଶେଷ ଦୀର୍ଘ ନିଃଶ୍ୱାସଟିଏ ଛାଡ଼ି ପଥର ଖଣ୍ଡିକ ଉପରୁ ଉଠି ଠିଆହେଲି ।

ମନ୍ଦାକିନୀ ତା ଆଡ଼କୁ ଚାହିଁ ଦେଖିଲେ, ନରୋତ୍ତମ ମୁହଁଟି କଳାକାଠ ପଡ଼ିଯାଇଚି । ସତେ କି ନିଜର ଜଣେ କେହି ଅତି ଆପଣାର ମରି ହଜି ଯାଇଚି । ଖୋଜିଲେ ଆଉ ମିଳିବ ନାହିଁ ।

"ଯାଉଚି ମାତା, ଥାଅ । ନାନୀ ଫେରିଲେ କହିବ, ନରୁ ଆସି ଖୋଜୁଥିଲି" ।

"କୁଆଡ଼େ ଆସିଥିଲ ବାବୁ" ?

"ବୋଉ ପଠାଇଥିଲେ, ଅନୁକୁ ନେଇ ଯିବାକୁ । ତାଙ୍କ ଗାଁଆକୁ ଯାଇଥିଲି । ଦେଖିଲି ସେଠୁ ଏମାନେ ପଳାଇ ଆସିଚନ୍ତି । କୁଆଡ଼େ ଯାଇଚନ୍ତି ସେଠି କିଏ କହିପାରିଲେ ନାହିଁ" ।

ନରୋତ୍ତମର ପଦ୍ମବାସିନୀଙ୍କ ଉପରେ ରାଗ ଏବଂ ଅନୁ ଉପରେ ଅଭିମାନ । ସେ ମଠ ଭିତରୁ ବାହାରକୁ ବାହାରି ଯାଉ ଯାଉ ମନେ ମନେ କହିଲି—ଆଉ ମୁଁ କାହାରି ଶାସନ ମାନି ପାରିବି ନାହିଁ, କି କାହାରିକି ଭଲ ପାଇବି ନାହିଁ । ଭଲ ପାଇବାଟା ଗୋଟାଏ ମସ୍ତବଡ଼ ଭୁଲ । ଭଲ ପାଇଲେହିଁ ମଲି । ସ୍ନେହ, ଶ୍ରଦ୍ଧା ସବୁ ସ୍ୱାର୍ଥ-ପାଇଁ । ଅନୁ ଅପେକ୍ଷା କରି ପାରିଲା ନାହିଁ । ମୁଁ ବାଇଆ ପରି ତାକୁ ଖୋଜି ବୁଲୁଚି ।

ସଞ୍ଜକୁ ନରୋତ୍ତମ ଟ୍ରେନରେ କଟକକୁ ଟିକଟ କାଟିଲା । ଏକ ଲୟରେ ଶୂନ୍ୟ ଆକାଶଆଡ଼େ ଅନାଇ ଅନାଇ ସେ ମନେ

ମନେ ସ୍ଥିର କଲେନେଲ—ଆଜ ମୁଁ ଗାଁଆକୁ ଯିବନାହିଁ । ବି. ଏ. ପାସ କରିବ; ବାହାରେ ବାହାରେ ବୁଲିବ । ନିଜେ ରୋଜଗାର କରି ନିଜ ଗୋଡ଼ରେ ଠିଆହେବ । ଦରକାର ନାହିଁ ପୈତୃକ ସମ୍ପତ୍ତି, ଆବଶ୍ୟକ ନାହିଁ ମୋର ବଡ଼ଲୋକ । ମୁଁ ଗରିବ । ଅନୁ ଅପେକ୍ଷା କରିପାରିଲି ନାହିଁ । ତା ମନ ଯୁଆଡ଼େ ଯିଅଡ଼େ ସେ ଯାଉ । ମୁଁ ବିଭା ହେବି । ସଂସାର କରିବ । ସ୍ନେହ କରିବାଟା ଭୁଲ୍ । ଭଲ ପାଇବାଟାହିଁ ଭ୍ରାନ୍ତି ।

ଘୋର ଆଶ୍ୱିନର ଆକାଶ ଆଉ ଉଦ୍‌ଭ୍ରାନ୍ତ ମନ, ବିଶ୍ୱାସ ନାହିଁ କାହାରିକି । ନିର୍ମଳ ଆକାଶ ଓ ପ୍ରଚଣ୍ଡ ଖରା—ସାଙ୍ଗେ ସାଙ୍ଗେ ମେଘ ଖଣ୍ଡେ କାହୁଁ ଭାସି ଆସିଲା । ଢାଳିଦେଇ ଗଲା ଅନର୍ଗଳ ଜଳଧାରା । ନରୋତ୍ତମର ମନ ଭିତରେ ପୂର୍ବ ଦମରେ ରାଗ, କ୍ରୋଧ, ଅଭିମାନ ଓ ଅନୁରାଗ ପ୍ରକାଶ ପାଉଛି । ମନର ବାଦଲ ଖଣ୍ଡିକୁ ତାର ଗୁଡ଼କଙ୍କଟି(୧) ପରି ବିଭ୍ରାନ୍ତ ଚିନ୍ତାର ବହୁମୁଖୀ ବାୟୁ ସ୍ରୋତ ଘୂର୍ଣ୍ଣି ବେଗରେ କେତେବେଳେ ଏଣିକି ପୁଣି କେତେ-ବେଳେ ତେଣିକି ଉଡ଼ାଇ ନେଇ ଫେରାଇ ଆଣି ଉପରକୁ ଉଠାଇ ତଳକୁ ଖସାଉଛି । ଜଳ ଭଉଁରିରେ ଟୁଣ୍ଟ ଡଙ୍ଗା ଖଣ୍ଡିକ ଭଉଁରି ଖାଉଛି, ଓଲଟ ପାଲଟ ହେଉଛି ।

ଚତଳ ମାଛ ପାଣିରେ ଓଲଟୁଛି । ମନ ଭିତରେ ଅନୁରାଧାର ଚିନ୍ତା ଓଲଟ ପାଲଟ ହେଉଛି । ଏକ ଦୃଷ୍ଟିରେ ଆକାଶଆଡ଼େ

(୧) ଗୁଡ଼କଙ୍କ—ସମୁଦ୍ର କୂଳିଆ ବାଲି ଉପରର ଘାସ ଜାତୀୟ ଲଟାର ବର୍ତ୍ତୁଳ ଫଳ । କନ୍ଦୁକ ଆକାର । ହାଲୁକା । ପବନରେ ଗଡ଼ ଗଡ଼ ଭାସି ଭାସି ଯାଏ ।

ନରୋତ୍ତମ ଚାହିଁ ରହିଛି । ପ୍ରତି ଷ୍ଟେସନରେ ରହି ରହି ପାସେଞ୍ଜର ଗାଡ଼ି ଖଣ୍ଡିକ ପୁଣି ଚାଲୁଛି । ଗୋଲ ଗୋଲ ଚକାଗୁଡ଼ାକ ତାଳେ ତାଳେ ନାଚଲା ପରି ଶବ୍ଦକରି ଚାଲିଚନ୍ତି । ଗୋଟିକ ପଛକୁ ଗୋଟିଏ ଷ୍ଟେସନ – ଯାହା ପଛକୁ ଯିଏ । ପହିଲେ ଗାଡ଼ିଟି ଛାଡ଼ିଲା ପୁରୀ ଷ୍ଟେସନରୁ । ନରୋତ୍ତମର ମନ ଭିତରେ ଗାଡ଼ିଟି ଷ୍ଟାର୍ଟ୍ ଦେଇଛି କୋଣାର୍କ ମନ୍ଦିରରେ ଗଜସିଂହ ମୂର୍ତ୍ତି ପାଖରେ । ଅନୁରାଧା— ସୁନ୍ଦର ଚେହେରା । ଗୋରା ରଙ୍ଗ । ଗଣବଣା ହରିଣୀ-ଛୁଆଟି ପରି କାତର-ଦୃଷ୍ଟିରେ ଏଣେତେଣେ ଚଙ୍ଗଚଙ୍ଗ ହୋଇ ଆଖି ବୁଲଉଛି । ଅସହାୟତାରେ ମୁହଁଟି ଶୁଖି ଯାଉଛି । ଦେହରେ ଓଦା—ଲୁଗା । ବୋଉ ଆଉ ସେ ଉଭୟେ ପାଖକୁ ଗଲେ । ଡ଼ାକଲେ ବୁଝାଇଲେ । ଶଗଡ଼ରେ ବସାଇ ଘରକୁ ଆଣିଲେ । ବାଟରେ କେତେ ଦୃଶ୍ୟ, କେତେ ଗାଁ, କେତେ ଗଛଲତା । ସବୁଗୁଡ଼ିକ ସେଦିନ ନୂଆପରି ଲାଗୁଥାଏ । ଉଡ଼ନ୍ତା ଗୁଡ଼ିକଙ୍କ ପରି ଭଲପାଇବାଟାର ସାରାଅଙ୍ଗ କଣ୍ଟକମୟ । ଭାବନାରେ ମନ ଉଡ଼ିଲା ପରି ପବନରେ ଉଡ଼ିଯାଉଥାଏ ଏଣୁ ତେଣିକି— ଅଣନିଶ୍ୱାସୀ ହୋଇ ପଛରେ ଗୋଡ଼ାଇବାକୁ ମନ ଉଡ଼ୁଥାଏ । କିନ୍ତୁ ବୋଉ ବସିଥାଆନ୍ତି ଗାଡ଼ିରେ ।

ଯୁବକ ମନଭିତରେ କେତେ କୌତୁକ କେତେ ରହସ୍ୟ ଉଙ୍କି ମାରୁଥାଏ । ମନ ହେଉଥାଏ — ଅନୁରାଧା ଆଉ ସେ, ଦିହେଁଯାକ ଗୁଡ଼ିକଙ୍କ ପଛରେ ଗୋଡ଼ାଇ ଥାଆନ୍ତେ କି ? ହସିଖେଳି ବାଲିଉପରେ ଗଡ଼ିଯାଉଥାଆନ୍ତେ । ସେଦିନ ମନଭିତରେ ଆଶା ଜାଗିଥିଲା—ଭଗବାନ ଯଦି ଅନୁକୁ ଆଣି ଅଯାଚିତ ଭାବରେ ହାତ ପାହାନ୍ତାରେ ଛାଡ଼ି ଯାଇଛନ୍ତି, ତେବେ ସେଇ ଭଗବାନହିଁ

ମନେକଲେ ଧନେ ହେଲେ ଭବିଷ୍ୟତରେ ସେ ଆଉ ଅନୁ ଦୁହେଁ ଆସି ଏଇବାଲରେ ନିଶ୍ଚୟ ଗଢ଼ିବେ; ଉତ୍ତନ୍ତା ଗୁଡ଼ିକଙ୍କ ଧରିବେ ।

ଧରିବେ ବୋଲି ଆଶା କରିଥିଲି ନରୋତ୍ତମ । କିନ୍ତୁ ଭଗବାନ ଦୂରେଇ ନେଲେ ଅନୁକୁ—ଚିରଦିନ ପାଇଁ ଜୀବନଧାରି ଅନୁର ଆଉ ସାକ୍ଷାତ ମିଳିବ ନାହିଁ ।

ଆଉ ଗୋଟିଏ ଷ୍ଟେସନରେ ଗାଡ଼ି ଅଟକିଲି । ଉତ୍ତନ୍ତା ଗାଡ଼ି ଉଡ଼ିଯାଉଚି । ଷ୍ଟେସନ ବଦଳାଉଚି । ଚିନ୍ତା ଅଟକି ଗଲି ଆଉ ଗୋଟାଏ ଷ୍ଟେସନରେ । ବାରିଆଉ ପୋଖରୀକୂଳ । ନାଗେଶ୍ୱର ଗଛ ଗୁଛିତଳେ ସଞ୍ଜବେଳେ ଅନୁକୁ ସେ ଆଉଜାଇ ନେଇଥିଲି ଗୁଡି ଉପରକୁ ।

ଆଉ ଏତିକରେ । ନରୋତ୍ତମର ଆଖି ବୋଲ ମାନୁନାହିଁ । ଲୁହ ଜକେଇ ଆସୁଚି, ବିନ୍ଦୁ ପାଲଟୁଚି—ଗଡ଼ିପଡ଼ୁଚି ଗୁଡିଉପରକୁ । ଓଠଦୋଟି ଥରିଉଠୁଚି । କାନ୍ଦିମାଡ଼ୁଚି । କାନ୍ଦିପକାଉଚି ନରୋତ୍ତମ । ରୁମାଲରେ ଆଖି ପୋଛିପକାଉଚି । ମନକୁ ଦୃଢ଼କରି ନେଉଚି । ଛିଃ । ଅନୁଛଡ଼ା ଦୁନିଆରେ କଅଣ ଆଉ ଝିଅ ନାହାନ୍ତି ? ଭଲପାଇବାଟା ଗୋଟାଏ ନିଶା । ନିଶା ଅଭ୍ୟାସ ଛାଡ଼ିବା ଉଚିତ । ବସିବା ଆନରୁ ଉଠି ଠିଆହେଲି ନରୁ । ଏଣେତେଣେ ଟିକେ ବୁଲିବୁଲି କଲି । ପୁଣି ଗୋଟାଏ ଷ୍ଟେସନରେ ଗାଡ଼ି ଠିଆହେଲି । ମନଫେରାଇ ନେବାଲାଗି ନରୋତ୍ତମ ତଳକୁ ଓହ୍ଲାଇ ଗଲି । ଦୋକାନରୁ ଗୁହା ଖାଇଲି । ବହି ବିକାଳୀ ପାଖରୁ ଖଣ୍ଡେ ବହି କିଣିଲି । ଗାଡ଼ିକି ଉଠିବାଲାଗି ଠିଆ ହେଇଚି ଦେଖିଲି, ସତେକି ଷ୍ଟେସନ ସେମୁଣ୍ଡେ କିଏ ଗୋଟିଏ ଝିଅ କାହା ହାତ ଧରି ଗୁଲ

ଯାଉଚ । ଠିକ୍ ଅନୁରାଧାପରି ଦେଖିବାକୁ । ଦୌଡ଼ିଲ୍ ନରୋତ୍ତମ । କିନ୍ତୁ ଏଣେ ହୁଇସିଲ ବାଜିଉଠିଲ୍ ଏବଂ ସେ ଝିଅଟି ଫାଟକ ବାହାରେ ଅଦୃଶ୍ୟ ହୋଇଗଲ୍ ।

ଭ୍ରମ ! ଭ୍ରମ ! ମୁଣ୍ଡ ଭ୍ରମିଯାଉଚ । ଚନ୍ଦ୍ରା ରୂପ ଘେନୁଚ । କଳ୍ପନା ଗୁମ୍ଫା ରଚୁଚ । ମନର ମାୟା ଅନୁରାଧାର କାୟା ସ୍ୱପ୍ନଟା ଦେଖୁଚ । ସତ୍ୟରୁ ଉଦ୍‌ଭୂତ ହେଲେ ସୁଦ୍ଧା ସ୍ୱପ୍ନଟା ସତ୍ୟ ନୁହେଁ । ଭୁଲ, ଭୁଲ, ଭୁଲ । ଭୂତପ୍ରେତ ଯେମିତି ଭୁଲ, ମରୀଚିକା ଯେମିତି ଭୁଲ, ଭଲପାଇବା ସେମିତି ଭୁଲ ଏବଂ ଭଗବାନ ସେମିତି ଭୁଲ । କିନ୍ତୁ ସେଇ ସବୁ ଭୁଲକୁ ହିଁ ଅବଲମ୍ବନ ରୂପେ ମନଭିତରେ ପ୍ରତିଷ୍ଠା କରାଇ ମଣିଷ ବଞ୍ଚିଚ । କାରଣ ମଣିଷ ନିଜେହିଁ ଗୋଟାଏ ଭୁଲ । ତାର ଜନ୍ମ, ଜୀବନ ଓ ମରଣ ତିନୋଟାଯାକ ମିଶି ଗୋଟାଏ ମସ୍ତବଡ଼ ଭୁଲ । ଗୋଟାଏ ଗୁମ୍ଫାବାଦ, ଗୋଟାଏ କୁହେଳିକା ଓ ପ୍ରହେଳିକା ।

ଗାଡ଼ି ଗୁଡ଼ିବା ଉପରେ । ନରୋତ୍ତମ ଗାଡ଼ିକି ଉଠି ବସିଲ୍ । ନରୋତ୍ତମ ଭାବିଲ୍—ଭଲପାଇବାଟା ଗୋଟାଏ ରୋଗ । ଦୁନିଆରେ ସୁନ୍ଦରୀ ହୋଇ କୌଣସି ନାରୀ ନାହିଁ । ପୁରୁଷର ଆଖିଦୋଷରୁ ସେମାନେ ସୁନ୍ଦର ଦିଶିଥାଆନ୍ତି ମାତ୍ର । ନାରୀସୃଷ୍ଟିକୁ ସୌନ୍ଦର୍ଯ୍ୟର ସୃଷ୍ଟି ବୋଲି କହିଲେ ପ୍ରତ୍ୟେକ ନାରୀକୁ ସୁନ୍ଦରୀ ଆଖ୍ୟା ଦିଆ-ଯାଇପାରେ । ନିଜକୁ କେନ୍ଦ୍ର କରି ପ୍ରତ୍ୟେକେ ସୁନ୍ଦରୀ । ସୁତରାଂ ମୋତେ ଯେ ଅନୁରାଧାଟି କେବଳ ସୁନ୍ଦର ଦିଶିଲ୍, ସେଇଟା ନିଶ୍ଚୟ ମୋ ଆଖିର ଦୋଷ ।

ପୁଣି ଭାବିଲ୍ ନରୋତ୍ତମ—ନା, ନା, ଆଖି ଦୋଷ ନୁହେଁ—ବୟସର ଦୋଷ । ଯୌବନର ଭ୍ରାନ୍ତି । ପ୍ରଥମ ହୋଇ ଯେଉଁ ଝିଅଟି

ଯୁବକର ଦୃଷ୍ଟି ପଥରେ ପଡ଼ୁଥାଏ, ସେଇଟି ତାକୁ ସବୁଠାରୁ ସୁନ୍ଦର ଦିଶେ । ତା'ସହିତ ଦିପଦ କଥାବାର୍ତ୍ତା ବା ଟିକିଏ ମିଳାମିଶାର ସୁଯୋଗ ମିଳିଗଲେ ସେଇଟିକୁ ସେ ଆପଣାର କରିନେବାକୁ ସ୍ଥିର ହୁଏ, ଏଇତ ହେଲା—ଭଲପାଇବା ! ଛି, ଛି, ଏ ବ୍ୟାଧିରୁ ମୁକ୍ତି ପାଇବାର ଉପାୟ ତେବେ କଅଣ ?

ଉପାୟ ଅଛି । ଚଟକିନା ଆଉ ଗୋଟିକୁ ବିଭା ହୋଇପଡ଼ିବା, କିମ୍ବା ବାପମା ଗୁରୁଜନ ଯାହାକୁ ବାଛିବେ, କିଛି ନବିଚାରି ତାକୁଇ ଗ୍ରହଣ କରିପକାଇବା । ସଂସାରରେ ନୂଆ ସୃଷ୍ଟି ବଢ଼ାଇବା ଲାଗି ପ୍ରକୃତିର ଗୋଟାଏ ଖେଳ ହେଲା ପୁରୁଷ ନାରୀର ପରସ୍ପରପ୍ରତି ଆକର୍ଷଣ । ପିଲାଝିଲା ଗୋଟିଏ ଦୋଟି ହୋଇଗଲେ କଥା ସରିଲା । ତେଣିକି—ଶୁଖିଲା ଗଙ୍ଗାରେ ଜୁଆର ନାହିଁ କି ଭଟ୍ଟା ନାହିଁ ।

ଗୋଟିଏ ଦୀର୍ଘ ନିଃଶ୍ୱାସ ଟାଣିନେଇ ନରୋତ୍ତମ ମନଟାକୁ ଦୃଢ଼ କରିନେଲା—କଟକ ସେ ଯାଉଛି । ପାଠ ପଢ଼ିବ । ସ୍ୱାଧୀନ ଭାବେ ଆୟ କରିବ । ମଣିଷହେବ । ଗୋଟିଏ ବିଭାହେବ । ସଂସାର କରି ସୁଖରେ ରହିବ । ବୃଥାରେ ଏସବୁ ମରୀଚିକା ପଛରେ ପାଗଳ ହୋଇ ଧାଇଁ ବୁଲିବ ନାହିଁ ।

ଭାଦ୍ରମାସିଆ ଆକାଶ । ପାଞ୍ଚମିନଟ ଭିତରେ ମେଘବାଦଲ । କୁଆଡ଼େ ଭାସିଗଲା, ସୂର୍ଯ୍ୟ ହସିଲେ, ପ୍ରକୃତି ହସିଉଠିଲା । ସୁନ୍ଦର ଦିଶିଲା ଚାରିଆଡ଼ । ମନ ପୁଣି ପରିଷ୍କାର ହୋଇଗଲା । କିଣି ଆଣିଥିବା ବହିଖଣ୍ଡିକ ପଢ଼ୁ ପଢ଼ୁ ହସିଉଠିଲା ନରୋତ୍ତମ । ଶସ୍ତା କବିତା । ଚାରିଟି ପଇସାର କିତାପ । ରଚୟିତା ହେମଚନ୍ଦ୍ର ସମିଦମିଆଁ । ସୁନ୍ଦରମଠ ବାବାଜିଙ୍କର କଲ୍କି ଅବତାର କଥା ବର୍ଣ୍ଣିତ ହୋଇଛି ।

ଡାକୁଚି ଲୋକେ କଣିନେଇ ପଡୁଚନ୍ତି । ଛି ! ଛି ! ସ୍ୱାଧୀନତା ପ୍ରାପ୍ତି ପରେ ଏତେବର୍ଷ ବାଦ ଲୋକଙ୍କ ଅନ୍ଧବିଶ୍ୱାସ ଓ ରୁଚି ବଦଳିଲା ନାହିଁ ।

ନିଜ କଥା ମନେ ପଡ଼ିଗଲା । ମନର ଗାଡ଼ି ଅଟକି ଯାଇଚି ଗୋଟାଏ ଷ୍ଟେସନରେ । ଇଞ୍ଜିନରୁ ପାଣି ସରିଗଲାଣି । ଆଉ କିଛି ପାଣି ନେବା ଆବଶ୍ୟକ । ନରୋତ୍ତମ ଭାବିଲା—ସ୍ନେହ, ପ୍ରେମ, ମିଳନ ଓ ବିଚ୍ଛେଦ—ଏ ଗୁଡ଼ାକୁ ଅତ୍ୟନ୍ତ ଗୁରୁତ୍ୱ ଦେଇ ଯାଇଚନ୍ତି ଦେଶଦେଶର ସାହିତ୍ୟିକମାନେ । କାହିଁ କୌଣସି ଔଷଧର ବ୍ୟବସ୍ଥା ତ କରି ଯାଇନାହାନ୍ତି କେହି ! ବିଚ୍ଛେଦରେ ଗୋଟାଏ କଅଣ କି ପ୍ରକାର ଜ୍ୱର ହୁଏ ବୋଲି ବର୍ଣ୍ଣନା କରି ଯାଇଛନ୍ତି । ହେଉ ବା ନହେଉ ସେ ସବୁ ବର୍ଣ୍ଣନା ଶୁଣିଲାମାତ୍ରେ ସଂସାର ପଥର ନୂଆ ବାଟୋଇକୁ ସତକୁ ସତ ଜ୍ୱର ଆକ୍ରମଣ କରେ ଛି ! ଛି ! ଉଦ୍ଭଟ କଳ୍ପନା ମାତ୍ର । ନରୋତ୍ତମର ଗାଡ଼ି ଗୁଡ଼ିଦେଲା କଟକ ଅଭିମୁଖେ । ବିଶ୍ୱାସ ନାହିଁରେ, ବିଶ୍ୱାସ ନାହିଁ । ଭେଦିଦେଇ ଆକାଶକୁ ପଡିଆସି ନାହିଁ ।

× × × ×

ଖାଇବେଳେ ବଡ଼ ପାନ ବଟାଟା ଫିଟେଇଦେଇ ପାନ ଭାଙ୍ଗି ବସିଚି ଧନେଶ୍ୱର ଦାଶଙ୍କ ଭଉଜ—ହୀରାମଣି । ଚୂଆପକା ଗୁଣ୍ଡି ଆଉ କେତକୀ ଖଇରଗୁଣ୍ଡ, ଆଗୁଳକରି ଖିଲେ ପାନ ବାଁ କଳକୁ ଯାକି ଦେଇଚି । ଗୋଡ଼ ଦିଇଟାକୁ ଲମ୍ବାଇ ଦେଇ ଗୋଟାକ ଉପରେ ଆରଟିକୁ ଛନ୍ଦିକରି ଥୋଇଚି । ବସିଚି ବାହାର ବାରଣ୍ଡାରେ ଆପଣା କୋଠରୀ ସାମନାରେ । ଆଉ କଣକୁ ଅନୁରାଧା ଘରେ ଲୁଚି ବସିଚି ।

ଶୋଇଥିଲ, କେତେବେଳୁ ଉଠି ବସିଛ । କବାଟ ଫିଟାଇ ନାହିଁ । ସବୁଆ ଫାଙ୍କବାଟେ ବାହାର ଅଗଣାରୁ କିଛି ଅଂଶ ଓ ହାରାମଣିର ବସିଲ ଥାନ ସଫା ଦିଶିଯାଉଛି । ହାରାମଣି ଭାବିଚି ଅନୁରାଧା ଏବେ ବି ନିଦରେ ଶୋଇପଡ଼ିଚି ବୋଲି । ମନୋରମା ପିଇସୀ ନିଜ ମା—ଖୁଡ଼ି ପାଖକୁ ବୁଲି ଯାଇଚି । ନିରମା ଧନେଶ୍ୱରର ଅତି ଆପଣାର । କହେ—"ଧନଆଟା ମୋର ପୁଅ" ।

ଧନେଶ୍ୱର ମୁହଁ ଶୁଖାଇ ପାଖରେ ଆସି ବସି ପଡ଼ିଲା । ହାରାମଣି ଥରେ ଅନୁରାଧାର କବାଟଆଡ଼କୁ ଅନାଇ ଦେଇ ଖିଲେ ପାନ ଧରି ହିଁଅର ପାଟିକି ଗୁଞ୍ଜି ଦେଲା । କହିଲା—"କାହିଁକି ଗୋଟାଏ ମୁହଁକୁ ସେମିତି ହାଣ୍ଡି ପରି କରିଚ ମ" ?

"କିଛି ଭଲ ଲାଗୁନାହିଁ ଭାଉଜ ! ଆଜ ସକାଳେ ବାପୁ ଅବଧାନକୁ ଡାକିଥିଲେ ବିଭାଘର ଦିନ ଠିକ୍ କରିବାକୁ । ବୁଢ଼ା ବହେ ଖଡ଼ି ଘୋରିଲା । ପାଞ୍ଜି ଫିଟାଇ ଶୋଳକ କେତୁଟା ବୋଲିଲା । ରାଧାର ହାତ ଦେଖି ରାଶି ନକ୍ଷତ୍ର ଠିକଣା କଲା । କହିଲା—ଏ କନ୍ୟାର ବିଭାଘର ଏବେ ହୋଇପାରିବ ନାହିଁ । ହେଲେ ବିପଦ ଅଛି । କୋଉ ଦିନ, କୋଉ ନକ୍ଷତ୍ର, କେଉଁ ଦିଗକୁ ଗତି କରୁଚି; ମୁଁ ଖଡ଼ି ଘସି କହିଦେଉଚି । କେଉଁ ଦିନ ପୁନେଇ ହବ, ଅମାବାସ୍ୟା ହବ, କେଉଁ ଦିନ ଚନ୍ଦ୍ରଗ୍ରହଣ, ସୂର୍ଯ୍ୟପରାଗ ଲାଗିବ କହିଦଉଚି । ଆଉ ତମ ଆମ କଥା କହିପାରିବ ନାହିଁ ? ମୋ ନାଁ ବାସୁ ଅବଧାନ । ଡାକରିଷି ବଚନଠାରୁ କର୍ଣ୍ଣପିଶାଚି ସାଧନାଯାକେ ମତେ ସବୁକଥା ମାଲୁମ ଅଛି । କହିଦେଉଚି ଦାଶେ, ମୋ କଥା ନ ମାନ ବାରମାସ ନ ପୁରିଲା ଆଗରୁ ଏ କନ୍ୟାକୁ ଯିଏ ବିଭା ହେବ ସେ ନିଶ୍ଚେ ସପ୍ତମଙ୍ଗଳା ଦିନ ରାତିରେ ମୃତ୍ୟୁ ମୁଖରେ ପଡ଼ିବ ।

ଦୀର୍ଘ ନିଃଶ୍ୱାସ ଟାଣିଲା ହୀରାମଣି । କହି ଉଠିଲା—କଅଣ ହେଲା ସେଥିକି ? କାହିଁକି ଏମିତି ବିକଳ ହେଉଚ ? ତମର କୋଉ କଥାକୁ ଅଭାବ ଅଛି । ସତକରି କହିଲ—ଆଉରି ଭୋକ ଅଛି ?—କଅଣ, ଖାଇବାକୁ ପାଉନ ? ତମର ଅଭାବ କଅଣ ହେ ? ଆଣିଚ ତ ଆଣିଚ । ଛତ୍ରାଟାକୁ କିଣି ଆଣି ଗୁହାଳରେ ତ ବାନ୍ଧି ପକାଇଚ । ଯାଉ ଚୈତ୍ରମାସ । ନାମକ ବଦଳ କରିଦିଅ । ହକ ଟଙ୍କା ଦେଇ ତ କିଣି ଆଣିଚ । ସେଇଟା କାହିଁକି ଏଠି ବସି ବସି ଖାଇବ ? ଥିଲେ ସବୁକଥା ଜାଣିବ । ତେଣିକି ଭଣ୍ଡୁର ହୋଇଯିବ ।

ହସି ଉଠିଲା ଧନେଶ୍ୱର । କହିଲା—ଭାଉଜ, ସତ କହିଲ ଏକା । ମେନା ବୋଉ ମଲାଦିନରୁ ତମେ ନଥିଲେ ମୁଁ କାହାଘରେ ପଶି ଯାଆନ୍ତିଣି ଏକା । ହେଲେ—ଭଲଅଛି, ମନ୍ଦଅଛି, ନାହିଁ ନାହିଁ ଆଜଯାକେ କିଛି କଥା ଜଣା ପଡ଼ିଯାଇନାହିଁ । ଭଲ ମନ୍ଦ ହୋଇ-ଗଲେ ଦୁନିଆରେ ତମକୁ ଆଉ ମତେ ଲୋକେ କଅଣ ବୋଲି କହିବେ ?

ମୃଦୁ ମୃଦୁ ହସି ଉଠିଲା ଭାଉଜ । ପାନ ବୋଳରେ ପାଚିଲା ଓଠ, କଳା ଦାନ୍ତ । ବାଁ ଗାଲ ଭିତରେ ପାନଖିଲଟା—ଫୁଲି ଉଠିଚି । କହିଲା—ଆ ହାଃ ହାଃ ! କେହି ଜାଣି ନାହାନ୍ତି । 'ନୁଚୁରି ନା ଗୋଡ଼ ହ'ଟା ଦିଶୁଚି' । ଖାଲି ଏକୁଟାକୁ ମୁଁ ଦିଆନିଆ କରି ବଶ କରି ରଖିଚି ବୋଲି—ସେଦିନ ପରି ସେରନ୍ତି—ମା କେଉଟୁଣୀ ଆସି ବସିପଡ଼ିଲା ମନୋରମା ନାମା କଡରେ । କଅଣ ଗୁଡ଼ାଏ ଫୁସୁର ଫୁସୁର ହେଉଥାଏ । ଦେଖିଲାକ୍ଷଣି ଡାକ ପକାଇଲି—କି ଲୋ ସେରନ୍ତି ମା, କେତେବେଳୁ ଅଇଲୁଣି କି ? ଅଇଲୁ ଏଣିକି ।

ଆସିଲା ପାଖକୁ । ସେ ବ ଠଉରେଇ ନେଇଚ, କାହିଁକ ମୁଁ ଡ଼ାକୁଚ ତାକୁ । ପାଖକୁ ଆସି ଭୁନ ଭୁନ କହିଲା—କଅଣ କହୁଚ ନାନ୍ନ, କାହିଁକ ଡ଼ାକଲ ? ମୁଁ କଅଣ ଏଡ଼େ ଗରହୁସିଆର ହୋଇଚ ଯେ ତମକଥା ତାଙ୍କ ଆଗରେ କହ ପକାଇବ ? ଅଇଲେ ଗଲେ ତ ତମଠୁ ମୁଠାଏ ଡ଼ୋକେ ପାଉଚ । ଦୁନଆରେ କଏ ଭଲ, ମୁଁ ନଜେ ଭଲ ନା ?

ସେରନ୍ତ ମା ଗୋଟାଏ କାହା ସାଙ୍ଗରେ ଅଚ୍ଛ ବୋଲ ଗାଁସାକ ହାଟ ବସିଚ । କଏ ଗୋଟାଏ ତା ଘରକୁ ଯା ଆସ କରେ ।

କହ ଉଠିଲା ଧନେଶ୍ୱର—ବୁଝି ଖବରଦାର । ରାଧା ଆଗରେ କହପକାଇବ ନାଇଁକି, ମେନା ମୋ ଝିଅ ବୋଲ । ମୁଁ ତ ସବୁ କହଚ । କନ୍ୟା ଅଭାବରୁ ଆଜଯାକେ ବାହା ହୋଇନାହିଁ ବୋଲ ।

ହାରାମଣି କଥା ମଝିରେ ମୁହଁଟାକୁ ଶୁଖାଇ ଦେଲା । କହିଲା—ଆଜ ହେଉ କାଲ ହଉ ତୁମେତ ତାକୁ ବାହା ହୋଇ ଘରସଂସାର କର ରହିବ । ମୁଁ ପୁଣି କୋଉ କୁଳର ହେବ ? ତମ ମନରେ ଏତେକଥା ଯେବେ ଥିଲା—ମତେ କାହିଁ ଏତେ ଆପଣାର କଲ ? କଅଣ ମୁଁ ତମର ଅଭାବ ରଖିଲ ? ନା, ଗୋଟାଏ ଭୁଉଣ ଭଲ ଲାଗିଲା ନାହିଁ ? ଗୋଟାକୁ ତ ବାହା ହେଲ—ସେ ଗଲା । ମୋ ସାଙ୍ଗରେ—

ହାରାମଣି ଆଉ କହିପାରିଲା ନାହିଁ । ତଣ୍ଟି ଫୁଲ ଉଠୁଚ, ମୁହଁ ଶୁଖି ଯାଉଚ । ଆଖିରୁ ଲୁହ ଗଡ଼ି ପଡ଼ୁଚ । ନାକ ସୁଁ ସୁଁ ହୋଇ ଯାଉଚ । ଅଭିମାନରେ ମନ କୁରୁଳୁଚ ।

ଧନେଶ୍ୱର ପାଖକୁ ଲଗିଆସି କହିଲା—ଛି ଛି, ଭାଉଜ, ତୁ କାନ୍ଦୁଚୁ କିଆଁ ? ଯେତୁଠା ବାଧା ହେଲେ, ତତେ ମୁଁ ଛାଡ଼ିପାରିବି ନାହିଁ ଜାଣିଥା । ଯିଏ ଯେତେ ଆସନ୍ତୁ, ତୋର ଗୋଡ଼ ତଳକୁ ।

କବାଟ କଣରେ ଲୁଚିବସି ଦିଅର ଭାଉଜଙ୍କର ଭୁଟୁଭାଟୁ ସବୁ କଥା ଅନୁରାଧା ଶୁଣିଲା । ବୁଝିପାରିଲା ସବୁ କଥା । ମୁଣ୍ଡଟାକୁ କାନ୍ଥରେ ଆଉଜାଇ ନେଇ କହିଲା—ହେ ଭଗବାନ ! ମତେ ଏଇ ଲୋକଟା ପାଖକୁ ଆଣିଲୁ । ହେ ପ୍ରଭୁ ମତେ ଏଠୁ ମୁକ୍ତ ଦେ । ମୁଁ କେମିତି କୁଆଡ଼କୁ ପଳାଏଁ ।

କିନ୍ତୁ ଅନୁରାଧା ପଳାଇ ଯିବାର ଉପାୟ ନାହିଁ । ଗୋଡ଼େ ଗୋଡ଼େ ଜଗୁଆଳ । ରାତିରେ ପାଖରେ ଆସି ଜଗି ଶୋଉଛି ନରମା ଖୁଡ଼ି । ଭାରି ହସିଆର ସଇତାନ । ଦିନଯାକ ହାରାମଣି । ମନୋରମା—ନାମ ସାଙ୍ଗରେ ପଦେ କେତେବେଳେ ଦୁଃଖ ସୁଖ ହେବ ସେତିକ ବି ସୁବିଧା ମିଳୁନାହିଁ । ଅନୁରାଧା ଏ ଘରର କଣ ହୋଇ ଆସିଛି । ଏ ଘରେ ସେ କଣ ଦାସୀ ଚାକରଠୁଁ ବଳପଡ଼ିଛି ।

ଧନେଶ୍ୱର ଉଠି ଯାଉ ଯାଉ ଗୁନ ଗୁନ କହିଗଲା—ଜଗିଥାଅ ଲୋ ଭାଉଜ । ବୁଢ଼ୀ ଆଉ ଟୋକି ଯେମିତି ଏକାଠି ନ ହୁଅନ୍ତି । କାଲି ମୁଁ ବୁଢ଼ୀକି ବିଦା କରୁଛି । ଗୋଡ଼େ ଗୋଡ଼େ ରାଧାକୁ ଜଗିଥିବୁ ଭାଉଜ ! କେମିତି ଏ ଚାରିଟା ମାସ ଗଡ଼ୁ । ଏତେ ଟଙ୍କା ଖରଚ କରି ଏତେ ଆଦରରେ ଅନୁରାଧାକୁ କିଣି ଆଣିଲି ସିନା—ରାଶି ନକ୍ଷତ୍ରଗୁଡ଼ିକ ବାମ ସାଧିଲେ । ବାପୁ ଅବଧାନ କହୁଛି—ଚାରିଟି ମାସ ଯାଉ । ନୋହିଲେ ମାରକ ଦଶା । ପୁଣି ସପ୍ତମଙ୍ଗଳା ଦିନ ! ଜୀବନଟାକୁ କାହାର ଭୟ ନାହିଁ ଭାଉଜ ?

ଚହିଁକି ଉଠିଲା ହୀରାମଣି—"କଅଣ କହୁଚ ! ନ ହେଲା ଏବେ ବାହାଘରଟା । କୋଉ ଅଭାବ ପଡ଼ିଚି ? ମୁଁ ଥିଲେ ସବୁ ଅଛି । ଯାଉ ଛଅମାସ, ଯାଉ ଆଠମାସ, ଯାଉ ବରଷେ । କହୁଚି ପରା—ଗୋରୁ ଜାତିଙ୍କି ଯେତେ ପେଟ ପୁରାଇ ଖାଇବାକୁ ଦିଅ, ତେବେ ବି ସେ ଏଠି ସେଠି ମୁହଁ ବୁଲାଇବେ" ।

ହସି ଉଠିଲା ଧନେଶ୍ୱର । ହସି ଉଠୁଚି ହୀରାମଣି ।

× × × ×

ହସି ଉଠିଲା ବାସୁ ଅବଧାନ । ହସି ଉଠିଚି ତା ଘର ମଣିଷ—ନଟିଆ-ମା ।

"ବିଭାଘରଟା ବନ୍ଦ କରିଦେଇ ଆଚ୍ଛା କରିଚ । ଯାଉ ଛଅମାସ । ବାପ ଦାଦ କଏ ଥିବ ଆସୁ—ସବୁ କଥା ଜାଣୁ । ଟଙ୍କା କେଇଟା ଅଛି ବୋଲି ଧନଆ ଧର୍ମ ଅଧର୍ମ ମାନୁନାହିଁ । ରାଣ୍ଡ ଭଉଜଟାକୁ ରଖିଚି, ଏ ପିଲାଟାକୁ ପୁଣି କିଣି ଆଣିଚି । ସେଦିନ ମୁଁ ଯାଇଥିଲି ଝିଅଟିକି ଦେଖି ଆସିବା ପାଇଁ । ଆହା ! କେଡ଼େ ସୁନ୍ଦର ପିଲାଟି । ଦେଖିବାକୁ ଆମରି କେତପରି" ।

"ଠିକ୍ କହୁଚ, ଆମରି କେତପରି । ଚଣ୍ଡାଳଟା ଗରିବ ପିଲା ଦେଖି କିଣି ଆଣିଲା, ବିଭାଟାଏ ହୋଇପଡ଼ିବ ବୋଲି । ମୁଁ ଆଉ ବୁଢ଼ାଟା ଜଗି ବସିଚି କାହିଁକି ଏ ଗାଁଆକୁ ? ଯାଉ ଛଅମାସ । ପିଇସୀ ରାଣ୍ଡଟା ଟଙ୍କା କେଇଟା ଦେଖି ଭୁଲିଗଲା । ଦରବୁଢ଼ାଟାକୁ ବିକିଦେଲା । ଧନଆର ଯେଉଁ ଚରିତ୍ର—ଆ ହାଃ ହାଃ ଛତର, ବିକାଣ୍ଡ" !

"ବକାଶ୍ରି ବୋଲ ବକାଶ୍ରି । କେତେ ଘର ବୁଡ଼େଇ ନାହିଁ ସେ । ତେବେ ବି ମନ ବୋଧ ହେଉନାହିଁ" ।

"ଦେଇଚ ହାକିଂ । ଗୃହମାସ ନ ପୁରଲେ ଏ ଝିଅକୁ ଯିଏ ବାହା ହେବ, ସପ୍ତମଙ୍ଗଳା ହିନ ତାର ମାରକ ଯୋଗ ଅଛି । କହିଦେଲ—ବୁଝିଲ ଧନ, ଜ୍ୟୋତିଷ ଶାସ୍ତ୍ର—କଥା କହୁଚ" ।

"ଭଲ କଲ, ଆଗୁ କଲ"

"ପିଲାର ଅକଲ ଗୁଡ଼ୁମ" ।

ଆଚ୍ଛା କରଚ । ଆଜି ହେଇଚି, ଯାଉ ମାସେ ଦିମାସ, ଆମ ଘରକୁ କେମିତି ହେଲେ ଥରେ ସେ ଝିଅକୁ ଡ଼ାକ ଆଣିବା । ଠିକ୍ ମୋର 'କେତ'ପର ଦେଖିବାକୁ । ଦେଖିଲାବେଳୁ ମୋ ମନରେ ମାୟା ଜନ୍ମି ଯାଇଚ । ନିତିପ୍ରତି ତାକୁ ଥରେ ଦେଖି ଆସିବାକୁ ମନ ଚଇଁ ଚଇଁ ହେଉଚ—ହେଲେ ଗୋଡ଼େ ଗୋଡ଼େ ଜଗୁଆଳ ।

ଅବଧାନଙ୍କର ଗୋଟିଏ ଝିଅ । ନାଁ କେତ—କେତକୀ ।

---

## ନଅ

ନରୋତ୍ତମର ବସା ଉଠା ଘର ଭିତରକୁ ଚାଲିଆସି ତା’ ଟେବୁଲ ପାଖରେ ପଦ୍ମବାସିନୀ ଠିଆହୋଇ ସାମନାରେ କାନ୍ଥରେ ଟଙ୍ଗା ହୋଇଥିବା ସ୍ୱାମୀଙ୍କ ଫଟୋଆଡ଼କୁ ଏକ ଲୟରେ ଅନାଇ ରହିଚନ୍ତି । ପାଖରେ ଯୁବକପୁତ୍ର ନରୋତ୍ତମର ଠିଆ ହୋଇଥିବା ଫଟୋଖଣ୍ଡିକ ଝୁଲୁଚି । ଅନେକ ସମୟ ଚାହିଁ ରହିଲା ପରେ ପଦ୍ମବାସିନୀ ଦୀର୍ଘ ନିଃଶ୍ୱାସ ଟାଣିଲେ । ଆଖି ଦିଇଟା ଓଦା ହୋଇ ଆସୁଚି । ଓଠ ଥରୁଚି, କାନ୍ଦ ମାଡୁଚି, ସ୍ୱାମୀ ଅନେକ ଦିନରୁ ଏକୁଟିଆ ଛାଡ଼ି ଚାଲିଯାଇଚନ୍ତି । ସଂସାରର ଏତେବଡ଼ ବୋଝଟାକୁ ବିଧବା ସ୍ତ୍ରୀଙ୍କ ମୁଣ୍ଡ ଉପରେ ଲଦିଦେଇ ଯାଇଚନ୍ତି । ଦିନ ରାତି କେତେ ଦୁଃଖରେ କଟୁଚି ତା ଭଗବାନ ଜାଣନ୍ତି । କୌଣସି ପ୍ରକାରେ କଟିଯାଉଚି କେବଳ ନରୋତ୍ତମଟି ପାଇଁ । ନରୋତ୍ତମ କେତେଦିନ ହେଲା ଅବୁଝାମଣ ଧରିଚି । ଅନୁରାଧାଟି ଆସିଲା ଏବଂ ଗଲା । ପଦ୍ମବାସିନୀ ନିଜଆଡ଼ୁ ଅସ୍ପଷ୍ଟ ଭାବରେ ଅନୁଟି ପ୍ରତି ଆଶା ପ୍ରକାଶ କଲେ । ଅନୁଟିକ ସ୍ନେହ କଲେ । ଆପଣାର କରିବା ପାଇଁ ହାତ ବଢ଼ାଇଥିଲେ । ଏ ସବୁର ଅର୍ଥ କଅଣ ହୋଇପାରେ ସେ ମର୍ମ ବୁଝିବାକୁ ଆଧୁନିକ ଶିକ୍ଷିତ ପୁଅଟି ପକ୍ଷେ ଦୁରୂହ ନୁହେଁ ତ ! ସେ ବୁଝିପାରିଲା, ମନେ ମନେ ଆଶା ପୋଷଣ କଲା । କିନ୍ତୁ ଆଗଭର ନିରାଶାର ବିଷବୀଜ ରୋପଣ କଲେ ପଦ୍ମବାସିନୀ । ପୁଅର ମନ ଭିତରେ ଝଞ୍ଜା ବହିବାକୁ ଆରମ୍ଭ କଲା । ଟଙ୍କାଗୁଡ଼ାଏ ଧରି ସେ

ଅନେକ ଦିନ ହେଲା ବାହାରି ଯାଇଛି—ଫେରିନାହିଁ । ଦୁଃଖୀର ସଙ୍ଗାଳ, ଅନ୍ଧର ଲଉଡ଼ିକୁ ଆଖି ଆଗରେ ନଦେଖି ମାଆ ଧୈର୍ଯ୍ୟ ଧରିବେ କେମିତି ?

ଠିଆହୋଇ ରହି ପଦ୍ମବାସିନୀ କାନ୍ଦୁଚନ୍ତି । ଆଜି ନୁହେଁ,—ନରୁ ଗଲାଦିନୁ ସେ କାନ୍ଦୁଚନ୍ତି । କାହା ଆଗରେ କିଛି ପ୍ରକାଶ କରିପାରୁ ନାହାନ୍ତି । ମାତ୍ର ମନେ ମନେ କାନ୍ଦୁଚନ୍ତି । ଅହରହ ସନ୍ତାପି ହେଉଚନ୍ତି—ଭାବି ହେଉଚନ୍ତି—"ମୋରି ଭୁଲ" ।

କଟକ ଫେରିଆସି ନରୋତ୍ତମ ମାଆଙ୍କ ପାଖକୁ ଚିଠି ଦେଇଚି । ଟଙ୍କା ମଗାଇନେଇ କଲେଜରେ ନାମ ଲେଖାଇଚି ଏବଂ ବୋର୍ଡ଼ିଂରେ ଅଛି । ମାଆଙ୍କ ଉପରେ ତାର ପ୍ରଚଣ୍ଡ ରାଗ—ପ୍ରବଳ ବିରୋଧ ଭାବ । ସେ କଥା ପଦ୍ମବାସିନୀ ବୁଝିପାରିଚନ୍ତି । ପୁଅକୁ ଆସିବା ପାଇଁ କେତେଥର ପତ୍ର ଦେଲେଣି, ମାତ୍ର ସେ ଲେଖୁଚି—'ସମୟ ହେଉନାହିଁ ବୋଉ, ଯାଇପାରୁ ନାହିଁ' ।

ଅନେକ ବେଳ ପରେ ଟେବୁଲ ପାଖରୁ ଅଗଣାକୁ ଫେରୁ ଫେରୁ ପୂଜାରୀକି ଡ଼ାକି କହିଲେ—ଆଜି ମୁଁ କଟକ ଯିବି । ଶଗଡ଼ ସଜାଡ଼ିବାକୁ ସଇତାକୁ କହିବ । ଗୁମାସ୍ତାଙ୍କୁ କହିବ ଚାଉଳ, ଡ଼ାଲି, ପନିପରିବା, ଘିଅ, ନଡ଼ିଆ ଆଦି ଦଶ ବାରଦିନ ପାଇଁ - ସଜାଡ଼ି ଦେବେ । ସଞ୍ଜକୁ ଗାଡ଼ି ଫିଟିବ ।

ଗାଡ଼ି ଫିଟିବ । ପ୍ରତି ଘରୁଆ ଘରେ କୃଷିବଳଦ ଦରକାର ପଡ଼ିଲେ ଶଗଡ଼ ବି ଟାଣନ୍ତି । ସୁଆର ପରି କାଠର ବଡ଼ ତାଟିଖଣ୍ଡେ ଚଉଡ଼ା ପିଣ୍ଡାର କୌଣସି କଡ଼କୁ ରଖା ଯାଇଥାଏ । ଶଗଡ଼ ଦଣ୍ଡାଟା ହୁଏତ କୋଉଠି ଡ଼େରାଯାଇଥାଏ ଏବଂ ଚକ ଦୁଇଟି ପାଣି ନପଡ଼ିବା ଓଳି ତଳକୁ ଆଉଜା ହୋଇଥାଏ । ଚୃଷି-ଧନ୍ଦା ବେଳକୁ ଚକଦିଇଟା

ଉପରେ ଶଗଡ଼ ଦଣ୍ଡାଟା ଭଡ଼ାଯାଇ ବଲକୁ ଖତ ଧାନ ବୁହାଯାଏ । ବଲରୁ କଟାଧାନ ଓ ଛଣ ବୁହାହୋଇ ଘରକୁ ଅଣାଯାଏ । ହୁକୁମ ପାଇଲାକ୍ଷଣି ଗୃକର ସଇତା ଦିନ ଦଶଟାବେଳକୁ ଶଗଡ଼ ସଜଡ଼ାସଜଡ଼ି କରି ବସିଲା । ଗୁମାସ୍ତାଏ ସବୁ ଗୃଉଳ, କଳା ମୁଗଡ଼ାଲି, ବନ୍ୟଳ କଦଳୀ, ନଡ଼ିଆ, ଆଉଆଉ ସରଞ୍ଜାମ ଠୁଳ କରିବାରେ ଲାଗିଲେ । ସଙ୍ଗରେ ଯିବେ ସଇତା ଓ ପୂଜାରୀ ଗୋବିନ୍ଦ ଦାସ । ସଞ୍ଜବତୀ ଲାଗିବ । ଚଣ୍ଡେଶ୍ୱରଙ୍କ ଆରତି ବଢ଼ିବ । ଗୋରୁମୁହଁା ଯିବେ । ଖିଆପିଆ ବଢ଼ିବ । ଶଗଡ଼ ଯୋଗୃଯିବ । ଗୋଟାଏ ହାରିକେନ୍ ଲଣ୍ଠନ ସଫା କରି, କିରସିନ ପୂରାଇ ଦିନ ଦିପହରୁ ସଇତା ଶଗଡ଼ ଦଣ୍ଡା ତଳେ ଟାଙ୍ଗିଦେଲା । ଦଣ୍ଡା ଉପରେ ତାଟଟାକୁ ଭଲକରି ବାନ୍ଧିଦେଇ ଆଣ୍ଠିଏ ବଦଳରେ ଅରୁଆକୁଟା ପାରିଦେଲା । ତା ଉପରେ ଖଣ୍ଡେ ମଶିଣା ଓ ଖଣ୍ଡେ ମୋଟା ସତରଞ୍ଜି । କୁଟାତକ ଶଗଡ଼ ଉପରେ ସ୍ପଞ୍ଜ ଗଦିପରି ନରମ ଓ ସୁଖଦାୟକ ହେବ ଏବଂ ଗୋରୁଙ୍କର ଖାଦ୍ୟରୂପେ ବ୍ୟବହୃତ ହେବ । ଦଣ୍ଡାର ପଛପଟକୁ ଗୋରୁଖାଦ୍ୟ କୁଣ୍ଡିଚ ଓ ବରିଚୂନା ବସ୍ତାଟା ଥୁଆଗଲା । ସବୁ ବାଉଁଶ ପାତିଆରେ ଦୋହରି ବୁଣା ଢ଼ମା ଟୋକେଇଟା ଦଣ୍ଡାତଳେ ଝୁଲାଇ ଦିଆଗଲା—ଏଥିରେ ଗୋରୁଙ୍କୁ କୁଣ୍ଡିଚ ପାଣି ମୁହଁାଯିବ । ଢ଼ମପୁଅ ବନମାଳୀ ନାହାକ ବାଉଁଶ ପାତିଆରେ ଢ଼ମାଟାକୁ ବୁଣିଦେଇଚି । ପାଞ୍ଚ ଦଶ ବାଲ୍ଟି ପାଣି ପୂରାଇ ଥୋଇଦେଲେ ଟୋପିଏହେଲେ ବୋହିଯିବ ନାହିଁ କି ଝରିଯିବ ନାହିଁ । ପଡ଼ିଲେ କି ବାଡ଼େଇ ହେଲେ ଭାଙ୍ଗିଯିବ ନାହିଁ । ଗରିବ ବନମାଳୀର ସୁଦକ୍ଷ କାରିଗରୀର ଯଥାର୍ଥ ପ୍ରଶଂସା ଓ ମୂଲ୍ୟ ଦେଉଚି କିଏ ଏ ରାଜ୍ୟରେ ? ବାଉଁଶ ପାତିଆରେ ନିରଛିଦ୍ର କୁଣ୍ଡଉଳି ଜଳପାତ୍ର ତିଆରି କରିପାରୁଚି ସେ ତାକୁ ଉତ୍ସାହ ଦେଉଚି କିଏ ?

ରାତି ନଅଟା ବେଳକୁ ପଦ୍ମବାସିନୀ ଚନ୍ଦ୍ରେଶ୍ୱରଙ୍କୁ ମୁଣ୍ଡିଆ ମାରି ଛଳଛଳ ଆଖିରେ ତାଙ୍କଆଡ଼କୁ ଅନାଇ ଯାତ୍ରା କଲେ । ନଜର ବୋଲି କେହି ନଥିଲେ ସୁଦ୍ଧା ଗୃହର ଗୁମାସ୍ତା ଓ ସାଇ ପଡ଼ଶାରୁ ପଚିଶି ତିରିଶିଜଣ ଆସି କାବାହୋଇ ଅନାଇ ରହିଚନ୍ତି । ସାଇରେ ଚହଳ ପଡ଼ିଯାଇଚି । ନଡିଦନଅା ଥିର ପାଣିରେ ଆବର୍ତ୍ତ ଦେଖା ଦେଇଚି । ପଦ୍ମବାସିନୀ ପ୍ରାୟ ବାହାରକୁ ଯାଆନ୍ତି ନାହିଁ । ବିଶେଷତଃ ସ୍ୱାମୀ ମଲା ପରେ ଘରଟି ଭଲ କି ସେ ଭଲ । ମନ ଭିତରଟା ଚହଲି ଯାଇଚି । ପୁଅ ରାଗିଚି, ଆସୁନାହିଁ । ଦୂରେଇ ରହୁଚି କାହିଁକି ?

କାହିଁକି—ସେ କଥା ତ ଜାଣନ୍ତି ପଦ୍ମବାସିନୀ । କିନ୍ତୁ କରିବେ କଅଣ ? ସାତପୁରୁଷୀ କୁଳମର୍ଯ୍ୟାଦା ଆଗରେ କଅଣ ବୋଲି ସେ ସାମାନ୍ୟ ଭିକାରୀର ଝିଅଟାକୁ ଘରକୁ ବୋହୂ କରି ଆଣିବେ ?

ଗାଡ଼ି ଗଡ଼ୁଚି । ନିର୍ମଳ ଆକାଶରେ ତ୍ରୟୋଦଶୀର ସ୍ୱଚ୍ଛ ଚନ୍ଦ୍ରମା । ଉପଦ୍ରବହୀନ ବାଟରେ ଭୟଭ୍ରାନ୍ତି କିଛି ନାହିଁ । ଚବିଶି ମାଇଲ ବାଟକୁ ବଳୁଆ-ବଳଦ ଦିଇଟା ଜହ୍ନ ବୁଡ଼ିବା ପୂର୍ବରୁ ଭିଡ଼ି ନେଇ ପହଞ୍ଚାଇ ଦେବେ । ମୁହାଁଣ୍ଡା ଉପରେ ପାଞ୍ଚଣ ଧରି ବସି ପଡ଼ିଲେ ପୂଜାରୀ ନନା । ସଇତା ପଛେ ପଛେ ଚାଲିଲା । ପୂଜାରୀ ନନା ଓ ସଇତା ଭିତରେ ବାରପଣ ଚାରିପଣର ଭାଗ ଛିଡ଼ିଚି । ଇଏ ବସିଚନ୍ତି ସେ ଚାଲୁଚି । ତା ପାଳି ପଡ଼ିଲେ ସେ ବସିବ, ଇଏ ଚାଲିବେ । ନହେଲେ ବାଟଯାକ ପାଳିକରି ଇଏ ସିଏ ହେଉଥିବେ । ଡ଼ୁଲି ଯାହାକୁ ମାଡ଼ିବ ସେ ଚାଲିବ ।

ଭିତରେ ଶେଯ ଉପରେ ଶୋଇଲେ ପଦ୍ମବାସିନୀ । ନିଦ କିନ୍ତୁ ଆସୁନାହିଁ । ବାରଆଡ଼ୁ ବାରଚିନ୍ତା । ସବୁଠୁ ପୁଣି ବଡ଼ କଥା

ହେଲ୍ କାହା ବସାରେ ରହିବେ ? ସଇତା କହୁଚି—ନବୀନବାବୁଙ୍କ ବସାକୁ ଯିବା । ପୂଜାଙ୍କ କହୁଚି ନଟବରବାବୁଙ୍କ ବସା ଆଗ ପଡ଼ିବ । କେହି ଆପଣାର ନୁହେଁ । ନବୀନବାବୁଙ୍କ ସ୍ତ୍ରୀ, ପଦ୍ମବାସିନୀଙ୍କ ବାପ ଘର—ପଡ଼ଶା ଗୌରି ମହାପାତ୍ରଙ୍କ ଝିଅ । ନଟବରବାବୁ ହେଲେ ମାମୁଙ୍କ ଶଳାର ପୁତୁରା ଲେଖା । ନବୀନବାବୁଙ୍କ ବସାକୁ ଯିବାକୁ ପଦ୍ମବାସିନୀଙ୍କ ମନ ବଳୁଚି । କୋଡ଼ିଏ ବର୍ଷ ପୂର୍ବେ ଦେଖାହୋଇ-ଥିଲ୍—ବିନୋଦିନୀ ସାଙ୍ଗରେ । ତା' ସଂସାରଟି ଦେଖି ଆସିବାକୁ ଇଚ୍ଛା । ପିଲ୍‌ପିଲ କେତୋଟି ? ଚଳପକ୍ଷ ତ ଭଲ । ଅନେକ ଥର ବିନୋଦିନୀ ଚିଠି ଦେଇ ଡାକଚି । ଦେଖାଯାଉ ତାରି ଘରେ ଦି' ଗୃହସ୍ଥ କଟାଇଦେଲେ ହେବ ।

ଆକାଶରେ ସ୍ୱଚ୍ଛ ଚନ୍ଦ୍ରମା, ଗୃହଆଡ଼େ ପ୍ରକୃତି ହସି ଉଠୁଚି । ସ୍ନିଗ୍ଧ ଶୀତଳ ମନ୍ଦ ପବନ—ମନୋରମ । ମାତ୍ର ପଦ୍ମବାସିନୀଙ୍କ ମନ ଭିତରଟା ଚିନ୍ତା ଭାବନାରେ ଛଟପଟ ହେଉଚି । ନିଦ ଆସୁନାହିଁ । ଶେଯ ଉପରେ ଏପଟ ସେପଟ ଓଲଟପାଲଟ ହେଉଚନ୍ତି ସେ । ଶଗଡ଼ିଆ ସଇତାର ମନଟା ମାତାଲ ହୋଇ ଉଠୁଚି—ଗୋଟାଏ ଗୀତ ବୋଲିବା ପାଇଁ, ମାତ୍ର ପରିସ୍ଥିତିଟା ପ୍ରତିକୂଳ ହୋଇ ଛିଡ଼ା ହେଉଚି । ବଳଦ ଦିଇଟା ହଲଦୋହଲ ଝୁଲି ଝୁଲି ସମ-ତାଳରେ ପାଦ ପକାଇ ଆଗକୁ ଚାଲିଚନ୍ତି । ଚହ୍ଲା ବାଟ । ବାଲିଆ ରାସ୍ତା । ଧୂମଧାମ, ପକାଉଠା ନାହିଁ । ବାଧା ବି ଲାଗୁନାହିଁ । ନିର୍ଜନତା ଓ ନିସ୍ତବ୍ଧତା ଭିତରେ ରହି ରହି ଏକୁଟିଆ ପକ୍ଷୀ ଗୋଟାଏ କାହାକୁ ଅନ୍ୱେଷଣ କରିବାକୁ ଉଡ଼ି ଯାଉ ଯାଉ ଡାକ ଦେଉଚି—କାଁ, କାଁ, କାଁ, କାଁ—କାହାଁ, କାହାଁ, କାହାଁ, କାହାଁ ।

କାହାକୁ ଖୋଜ ହେଉଚି ପକ୍ଷୀ ? କାହାକୁ ଖୋଜ ବାହାରିଚନ୍ତି ପଦ୍ମବାସିନୀ ? ଆପଣାର କେହି ?, ସ୍ନେହ ଶ୍ରଦ୍ଧାର କାହାର କି ?

ପଦ୍ମବାସିନୀ ଭାବୁଚନ୍ତି—ନାହିକଟା ସରିଲ ମାସେ ମାଆଠାରୁ ପିଲା ପର ହୋଇଚାଲି । ତେଣିକି ସେ ଆଉ ତୁମେ କେହି କାହାରି ନୁହଁ । ନୋହିଲେ ସାମାନ୍ୟ କଥାକୁ ଗଣ୍ଠି କରି ନରୋତ୍ତମ ଏତେ ଦିନ ହେଲା ଘରକୁ ଆସୁନାହିଁ । ମାଆର ମନକଥା ସେ କାହୁଁ ଜାଣିବ ? ପିଲାଝିଲାର ବାପ ହେଲେ ଯାଇ ସେ କିଛି କିଛି ବୁଝି-ପାରିବ ସିନା !

ମନେ ପଡ଼ିଗଲା, ଥରେ ବିନୋଦିନୀ ଲେଖିଥିଲା—ବଡ଼ ଝିଅଟି ମୋର ବଡ଼ ଚଗଲ । ତମକଥା ଆମ ଘରେ ପଡ଼ିଲେ—କେତେଥର ପଚାରିଲାଣି—ମାଉସୀ କେମିତି ଥରେ ତ ଦେଖାଇଲ ନାହିଁ ବୋଉ ?—ତା ନାଁଟି ଜ୍ୟୋସ୍ନା ।

ଭାବିହେଲେ ପଦ୍ମବାସିନୀ—ଫଟଖଣ୍ଡିଏ ପଠାଇଥିଲା ବିନୋଦିନୀ । ତାର ତ ଦି' ତିନଟି ଛୁଆ । ଜ୍ୟୋସ୍ନାର ଫଟଟି ପଠାଇବାର ଉଦ୍ଦେଶ୍ୟ କଅଣ ? ହେଲେ ସୁନ୍ଦର ଝିଅଟିଏ । କେଉଁଟିଏ ହେବଣି ! ହୁଏ ତ ହାଇସ୍କୁଲରେ ପଢ଼ୁଥିବ । ଭୁଲ କଲି, ତା' ପାଇଁ ତ କିଛି ଆଣିପାରିଲି ନାହିଁ !

ମନ ଭିତରେ କିଛି ସମୟ ଗୁମ୍ ଖାଇଯାଇ ପଦ୍ମବାସିନୀ ଭାବିଲେ—ହୁଏତ ଜ୍ୟୋସ୍ନାଟିକୁ ଦେଖିଲେ ଅନ୍ୟ କଥା ମନରୁ ଭୁଲି ଯିବ । ପିଲା ମନ ବଦଳି ଯିବାକୁ ବେଶୀ ବେଳ ନୁହଁ ତ !

ଘୋର-ନିଶ୍ୱାସ ଟାଣି ଚଣ୍ଡେଶ୍ୱରଙ୍କ ଉଦ୍ଦେଶ୍ୟରେ ପଦ୍ମବାସିନୀ ମୁଣ୍ଡିଆ ମାରିଲେ—"ତୋ ଇଚ୍ଛା ମା ! ଆଜିଯାକେ ମୁଁ ଭାବିପାରି ନଥିଲି । ଆଜି ତୁ ମନେ ପକାଇଦେଲୁ । ହଉ ତୋ ଇଚ୍ଛା" ।

× × × ×

"ଏତେଦିନପାକେ କେଉଁଠି ମରିଥିଲୁ ସିଂହ ? ପୋଡ଼ା ମୁହଁକୁ ଟିକିଏ ହେଲେ ଲାଜ ସରମ ନାହିଁ" ?

"ଲାଜ ସରମ ସବୁଯାକ ମରିଯାଇଛି ଲୋ ନାନୀ । ପିତାମ୍ବରୀ ମଲାଦିନୁ ସବୁ ମୋର ସରିଯାଇଚି" ।

"ସଂସାରରେ ତୋରି ଏକା ପିତାମ୍ବରୀ ମଲା ? ମାଇଚିଆଟା ନିଶା ଖାଇ ଖାଇ ସବୁ ଯାଇଲୁ । ଆଜିପାକେ କୋଉ ଗାତରେ ପଶିଥିଲୁକି ତୁ" ?

"ପିତାମ୍ବରୀ ଯାଇଚି ଲୋ ନାନୀ ! ମୋର ସବୁ ସରିଯାଇଚି । ମାନ, ମହତ୍ତ୍ୱ, ମଣିଷ ପଣିଆ, ବିବେକ, ବୁଦ୍ଧି, ଶରୀର ଶକ୍ତି ସବୁ ଶୂନ୍ୟ ହୋଇଯାଇଚି । ସତ କହିଲୁ ନାନୀ, ଗାତରେ ମୁଁ ପଶିଚି । ଧୀରେ ଧୀରେ ଗାତ ଭିତରକୁ ପଶି ପଶି ଯାଉଚି । ମରଣର ଗାତ, ବସୁମାତା ଧରଣୀ ଫାଟି ଫାଟି ଯାଉଚି ଆଉ ମୁଁ ତାରି ଭିତରକୁ ପଶି ପଶି ଯାଉଚି । ପିତାମ୍ବରୀ ମରିଚି, ସିଂହ ବାକଗୁରୁ ମରିଚି । ଖାଲି ତା' ପ୍ରେତଟା ଟଳି ଟଳି ହୋଇ ଟଳି ଟଳି ଏଣେତେଣେ ବୁଲୁଚି । ମାୟା ନାହିଁ, ମମତା ନାହିଁ, ବାଟ ନାହିଁ, ଅବାଟ ନାହିଁ, ମଡ଼ା ନାହିଁ, ଅମଡ଼ା ନାହିଁ—କୁଆଡ଼େ ଯାଉଚି, କେମିତି ଯାଉଚି କିଛି ଠିକଣା ମୋର ରହୁନାହିଁ । ଚାଲିଚି ନା ଚାଲିଚି—ବସିଚି ନା ବସିଚି, ସଦାବେଳେ ଅଜ୍ଞାନ ପ୍ରେତଟା ବଞ୍ଚି ରହିଚି ମାତ୍ର । ନିଃଶ୍ୱାସ ମାରୁଚି ଖାଲି ନାମକୁ ମାତ୍ର ବଞ୍ଚି ରହିବା ପାଇଁ" ।

"ଆରେ ହେ, ନିଲଠା ! ମୁଁ ବି ସଂସାରରେ ଏକୁଟିଆ । ମତେ ବି ଏକୁଟିଆ ଛାଡ଼ି ତୋ ଭଉଣୋଇ ଚାଲିଗଲା । ଏଡ଼କ ମାଇଚି ମାଇଆଟା ତୁ ? ସେଥି କଣ ମନେ ପଡ଼ୁନାହିଁ ତୋର ? ଝିଅଟିର ଦାୟିତ୍ୱ ତୋ ଉପରେ ନା ମୋ ଉପରେ" ?

"ତୋ ଉପରେ ଲେ ନାନୀ ! ତୋରି ଉପରେ । ଅନୁ ଆଉ ମୁଁ ତୋର ଉପରେ" ।

"ମୋର ଉପରେ ? ପୋଡ଼ାମୁହାଁ—କହୁଚ ମୋର ଉପରେ । ଝିଅ ଜନ୍ମ କରିଥିଲୁ ତୁ—ମନେ ପଡ଼ୁନାହିଁ, କେମିତି ସେ ବଞ୍ଚିବ, କିଏ ତାକୁ ପୋଷିବ, ପାଳିବ ?

"ସେଇ ଗୋଟିଏ ମାତ୍ର ଧ୍ରୁବତାରା । ତାର ରୂପଟା ମୋ ଆଖି ଆଗରେ ଦିଶିଯାଉଚି । ଘୋର ଅନ୍ଧକାର ଭିତରେ ଗୋଟିଏ ମାତ୍ର ଆଲୁଅ—ଜୁଳୁଜୁଳୁ ହୋଇ ବହୁ ଦୁରରୁ ଦିଶିଯାଉଚି । ସେଇଥି ପାଇଁ ଅନ୍ଧର ଆଖି ଦିଇଟାକୁ ଯେନ ଅଣ୍ଡାଳ ଅଣ୍ଡାଳ ମୁଁ ତୋର ପାଖକୁ ଧାଇଁ ଆସିଚି ପରା ନାନୀ" !

"ଧାଇଁ ଆସିଚି ଚଣ୍ଡାଳ । ଅରକ୍ଷିତ । କହୁଚି ଧାଇଁ ଆସିଚି । ନାନୀ ମଲା କି ଗଲା, ଝିଅ ମଲା କି ଗଲା ପଚରାନାହିଁ ଉଚରାନାହିଁ । କହୁଚି—ଅଣ୍ଡାଳ ଅଣ୍ଡାଳ ଧାଇଁ ଆସିଚି ! ଏତେ ଦିନକେ ଦେଖା ଦେଉଚି, କହୁଚି ଧାଇଁ ଆସିଚି । କହୁଚି ଧ୍ରୁବ ତାରା । ତୋ ଧ୍ରୁବ ତାରା ମଲାଣି" !

ଚମ୍ପାଗଛଟି ମୂଳେ ଚକାପଥର ଖଣ୍ଡିକ ଉପରେ ସକଗୁରୁ ବସିପଡ଼ିଲା । ଚିହ୍ନିକି ଉଠି ପଚାରିଲା—"ମଲାଣି ? ସତ କହୁଚୁ ନାନୀ, ମୋ ରାଧି ମଲାଣି ?

ନାନୀ ମୁହଁକୁ ଏକଦୃଷ୍ଟିରେ ଅନାଇ ରହିଲା ଘଡ଼ିଏ । ଦିହେଁ ଯାକ ନୀରବ ନିଶ୍ଚଳ । ସକଗୁରୁ ପ୍ରଥମେ କଥା ଆରମ୍ଭ କଲା—"ନାହିଁ ନାନୀ ! ମିଛ କହୁଚୁ । ତୋ ଆଖି ନାକ କହୁନାହିଁ । ମୋ ରାଧି କାହିଁ ସତ କହ ! କେଉଁଠି ରଖିଚୁ କହ ମତେ । ମୋ ରାଣଟି ସତକରି କହ" ।

ହସୁଛି ରାଜଗୁରୁ—ଧୀରେ ଧୀରେ ହସିଉଠୁଛି ।

ମୁହଁଟାକୁ ବିକୃତ କରି ମନୋରମା କହିଲା—ସତ କହିବି ଚଡେ ? ପୋଡ଼ାମୁହାଁ ମୁରୁବାରକୁ ସତ କଥାଟି କହିଦେବି ? ହଉ ଶୁଣ, ରାଧିକ ମୁଁ ଜଣକୁ ଦେଇଦେଇଛି । ସେ ତାକୁ ବିଭା କରିଥିରେ ବାହା ହବ । ଗରିବ ଅରକ୍ଷିତ ପିଲାଟାକୁ ନେଇ ମୁଁ ଆଉ କଅଣ କରନ୍ତି ?

ଉତ୍ତେଜିତ ହୋଇ ଉଠିଲା ରାଜଗୁରୁ । କହିଲା ପୋଡ଼ାମୁହିଁ ଲୋ ! ମୋ ରାଣିଟାକୁ କେଉଁ କଂସେଇ ହାତରେ ଦେଇଦେଲୁ ? ମୁଁ ତାକୁ ଭଲ ଯାଗାରେ ବାହା ଦେଇ ଥାଆନ୍ତି । "ରାଜଦତ୍ତ ଧନ, ପିତୃଦତ୍ତ କନ୍ୟା, ତୁଟା କଏ, ତାକୁ ଉଠେଇ ଦବାକୁ ?

ଉତ୍ତେଜିତ ହୋଇ ଉଠିଛି ମନୋରମା । ଅଣ୍ଟାରେ ହାତ ଠିଆ ହୋଇଗଲା । କହିଲା—ଭଲ ଯାଗାରେ ଦେଇଥାଆନ୍ତୁରେ ଚଣ୍ଡାଳ, ଅରକ୍ଷିତ, ! ସବୁବେଳେ ନିଶା ଖାଇ ଅଜ୍ଞାନ ହୋଇ କୁଆଡ଼େନାଇଁ କୁଆଡ଼େ ବୁଲୁଛି । କହୁଛି "ରାଜଦତ୍ତ ଧନ ଆଉ ପିତୃଦତ୍ତ କନ୍ୟା" ?

ଭାଇ ଭଉଣୀଙ୍କର ବାକ୍‌ବିତଣ୍ଡା ଆହୁରି ବହୁତ ଦୂରକୁ ଯାଇଥାଆନ୍ତା । ମନ୍ଦିରରେ ମନ୍ଦାକିନୀ ମାତା ଆସି ପହଞ୍ଚି ଯାଇ ଭଣ୍ଡୁର କରିଦେଲେ । କହିଲେ—ତୁମେ କାହିଁକି ଏତେ ବ୍ୟସ୍ତ ହେଉଛ ରାଜଗୁରୁ ? ଝିଅ ଭଲ ଯାଗାକୁ ଯାଇଛି । ମନ କରୁଛ ତ ଥରେ ଦେଖିଆସ ।

"କେଉଁ ଗାଁ ନାମ ! କାହାକୁ ଦେଇଛ" ?

ନାମ ଉତ୍ତର ଦେଲା ପୂର୍ବରୁ ମନ୍ଦାକିନୀ କହି ଉଠିଲା—କଟକ ଜିଲ୍ଲା ବଟିବ ମୌଜା ଧନେଶ୍ୱର ଦାଶ ଧନୀ ଲୋକ । ସମ୍ପତ୍ତି ,ବାଡ଼

ଅଛି । ଖାଦାଖାଏ ଅଛି । ବଡ଼୍‌ଲୋକ । ବୟସ ବ ଅଳ୍ପ । ଦୟାକରି ତୁଳସୀପତ୍ର ପାଞ୍ଚଟିକ ସେ ଝିଅକୁ ନେଇଯାଇଚନ୍ତି ବୋଲି କହିଲେ ଚଳେ । ମନ ହେଉଚ ତ ଥରେ ଯାଇ ଦେଖିଆସ । କାଲି ଶୁଦ୍ଧ ନ ପଡ଼ିବାରୁ ବଡ଼ିଭଉଥି ଘରୁ ପାଞ୍ଚମାସ ଗଡ଼ିଚ । ଯାଉନ ଥରେ ଦେଖିଆସିବ" ।

ପଥର ଉପରୁ ଉଠୁ ଉଠୁ ବାଳଗୁରୁ କହିଲେ—"ଯିବ ଥରେ । ସ୍ଥାନ କପାଳୀଟାକୁ ଥରେ ଦେଖିବାକୁ ଯିବ । ପିଚାମ୍ବରୀ ମଲା ନାହିଁ ଯେ ମୋର ସୁନାର ସଂସାରଟାକୁ ଚୂନା କରିଦେଇ ଗଲା । ପୋଡ଼ା ମୁହିଁଟାର ମୁହଁରେ ମୁଇଁ ନିଜେ ଏଇ ହାତରେ ନିଆଁ ଦେଇ ଆସିଚ । ତାର ପ୍ରେତ ମୋର ସର୍ବନାଶ କରୁଚ । ମାନ ଗଲା, ସମ୍ମାନ ଗଲା, ଘର ଗଲା, ଦ୍ୱାର ଗଲା, ମୋର ସ୍ୱଭାବ ଚରିତ୍ର ଗଲା । ମୋର ବୁଦ୍ଧି ବିବେକ ଗଲା—ମୁଣ୍ଡଟା ଶେଷ ହୋଇଗଲା । ସ୍ୱାସ୍ଥ୍ୟ ଗଲା, ଶକ୍ତି ଗଲା । ସବୁ ଖାଇଲା ସେଇ ଭୂତ । ଶେଷକୁ କୋଳର ଝିଅଟିକ ଖାଅନ୍ତା ଖାଇଗଲା ମୋର ଗୁଣବନ୍ତୀ ନାଣୀ । ଆଉ କଅଣ ବାକି ରହିଲା ଲୋ ରଣ୍ଡି" ?

ପଥର ମୂର୍ତ୍ତି ପରି ନିଶ୍ଚଳ ହୋଇ ଠିଆ ହୋଇ ଏକ ଦୃଷ୍ଟିରେ ବାଳଗୁରୁ ଅନାଇ ରହିଲା ମନୋରମା ଆଡ଼କୁ । ଅନାଇଚ ଆଉ କାନ୍ଦୁଚ । ଆଖି ଛଳ ଛଳ ହୋଇ ଆସିଲାଣି । ପାଣି ଧାର ଝରି ପଡ଼ୁଚ ଗଣ୍ଡଦେଶକୁ । ଝରଣା ପାଣିର ଅସରନ୍ତି ସୁଅ ଭିତରେ ନିଆଁ ଜଳୁଚ ବାଳଗୁରୁଙ୍କ ଆଖି ଦିଇଟାରେ—ରାଗରେ, କ୍ରୋଧରେ ତିକ୍ତତାରେ ଅନୁଶୋଚନାରେ, ଆଉ ଅସହାୟତାରେ, ଜୀର୍ଣ୍ଣଶୀର୍ଣ୍ଣ ଦୈନ୍ୟ ଭିତରେ ।

ଏଲ ଲଫ୍ଟରେ ଶୁହିଁ ରହିଚ ମନୋରମା । ଭାବୁଚ—ମୁଁ ତ ପରଦ୍ୱାରସ୍ଥ ଭିକାରୁଣୀ । କଅଣ କେମିତି କୂଆନ-ଝିଅ ପିଲାଟାକୁ ମୋପରି ଅସହାୟା ଅନାଥା କେତେଦିନ ଜଗିରଖି ସମ୍ଭାଳି ଥାଆନ୍ତା ?

କିନ୍ତୁ ରାଜଗୁରୁଙ୍କ ଜୀର୍ଣ୍ଣ, ଶୀର୍ଣ୍ଣ କଙ୍କାଳସାର ଶରୀର ଆଡ଼କୁ ଅନାଇ ଦେଲାବେଳକୁ କାନ୍ଦ ମାଡ଼ିଆସୁଚି । କିନ୍ତୁ ସେ କହିପାରିଲେ ନାହିଁ ।

ରାଜଗୁରୁଙ୍କ ମନେ ପଡ଼ିଯାଉଚି ଛୁଇଁଛୁଇଁକା ହୋଇ ନରୋତ୍ତମର ସ୍ୱରୂପଟି । କେଡ଼େ ସରଳ ପିଲା, କେମିତି ବ୍ୟବହାର ! କିନ୍ତୁ, କାହିଁକି ସେ ଆଶା ? ସେ ଚିନ୍ତା କେଉଁ ଭରସାରେ ମନ ଭିତରେ ଆଜଯାକେ ଭୁଙ୍କାଟାରେ ବାସ୍ପା-ବସା ବୁଣୁଚି ?

ରାଜଗୁରୁ ଦରିଦ୍ର, ନିଃସହାୟ, ଗୃହହୀନ ତଥାପି ସାତପୁରୁଷୀ ବଂଶମର୍ଯ୍ୟାଦା ଓ ସମ୍ଭ୍ରାନ୍ତତାର ସ୍ୱପ୍ନ ଏବେ ବି ସେ ପାସୋରି ପାରୁନାହାନ୍ତି । ପିତାମ୍ବରୀ ଯାଇଚି ସବୁ ସେ ହରାଇ ବସିଚନ୍ତି । ସ୍ୱପ୍ନଟା କିନ୍ତୁ ଭୁଲିପାରୁ ନାହାନ୍ତି । ସ୍ୱପ୍ନରେ ବୁଡ଼ିରହି ସେ ଆଶା ମରୀଚିକା ପଛରେ ବାୟାପରି ଧାଇଁଚନ୍ତି ମାତ୍ର । ତଳକୁ ଓହ୍ଲାଇପଡ଼ି ଏକମୁହାଁ ବାହାରକୁ ବାହାରି ଯାଉ ଯାଉ କହିଗଲେ—ତୁ ତ ମୋ ଝିଅକୁ ଟେକିଦେଇଚୁ ନାହିଁ । ମୋ ଝିଅ ସେ, ମୁଁ ତାର ବାପା—ଜନ୍ମ କରିଚି । ତୁଟା ପୋଡ଼ାମୁହିଁ କିଏ ତାର ? ପରଟଗାଣୀ ବିଧବା । ତୋର କି ଅଧିକାର ଅଛି ତା ଉପରେ ? ଯାଉଚି ମୋ ଝିଅକୁ ମୁଁ ଲେଉଟାଇ ଆଣିବି । ଆଣିବି, ଆଣିବି, ଆଣିବି ନିଶ୍ଚୟ ।

ପାଗଳ ! ଫେରାଇ ଆଣିବ ଇଏ ? ଭିକାରୀଟାଏ । ଦେଖିଲେ ଲୋକେ ହସିବେ, ଘଉଡ଼ାଇ ଦେବେ । ଦାଣ୍ଡରେ ସଫା ହୋଇ

ଲୁଗା ଜାମା ଖଣ୍ଡେ ନାହିଁ । ଛିଣ୍ଡା, ମଇଳା ଖଦ ଖଣ୍ଡେ ସାତଗଇଁଠା, ବେକରେ ଖଣ୍ଡେ ଚିରା ଗାମୁଛା, ଚିରା ହାଫ୍ କାମିଜ୍ ଖଣ୍ଡିକ କାନ୍ଧ ଉପରେ ଝୁଲୁଚି । ଦହ ତ କଣ୍ଟାସାର । ହ୍ରତବକାଳୀ ଦେଖି-ପକାଇଲେ ଲୋକେ ଭେଟଣା ହୋଇଯିବେ । ମନୋରମା କାବା ହୋଇ ତା'ଆଡ଼କୁ ଅନାଇ ରହିଲା ।

ମନ୍ଦାକିନୀ ଠିଆ ହୋଇ ହସିପକାଇଲା । କହିଲା—ଯାଉଚୁ ତ ଯାଅ ବାଳଗୁରୁ । ଭଲ ହେଲା ଜୋଇଁଙ୍କ ଘରେ କେଇଟା ମାସ ରହିଗଲେ ଜୀବନ ପଶିଯିବ । ଜୋଇଁପିଲାଟି ଦେଖିଦେଲେ ମନ ବଦଳିଯିବ । ଶେଷକୁ କନ୍ୟା ଦାନଟି କରି ହସି ହସି ଫେରି ଆସିବ ଯେ ।

---

## ଦଶ

ବିନୋଦିନୀ ଆଜି ପଦ୍ମବାସିନୀ ବୈଠକଖାନା ଘରେ ଗଦିଲଗା ଅନୁଚ୍ଚ ବେତଚୌକି ଦୁଖଣ୍ଡି ଉପରେ ବସିଛନ୍ତି । ପାଖକୁ ଆଉ ଦୁଖଣ୍ଡି ଚୌକି ଓ ଖଣ୍ଡେ ଅନୁଚ୍ଚ ଟେବୁଲ ପଡ଼ିଛି । ଟେବୁଲ ଉପରେ ସୁନ୍ଦର ଟେବୁଲ କ୍ଲଥ ଓ ଫୁଲଦାନ । ଦୁଆରବନ୍ଧରେ ଚିତ୍ରିତ ପରଦା ଝୁଲୁଛି । ନବୀନ ବାବୁ ବଡ଼ ବ୍ୟବସାୟୀ । ସେ ଖୁବ କମ ସମୟ ଘରେ ରହନ୍ତି । ଦିନରାତି ଅଫିସରେ ଓ କାମରେ ବ୍ୟସ୍ତ ରହନ୍ତି । ବିନୋଦିନୀ ଆଜି ତାଙ୍କ ବଡ଼ଝିଅ ଜ୍ୟୋସ୍ନାଟିର କଥା ବାରମ୍ବାର କହି ଚାଲିଛନ୍ତି । ଥରକୁ ଥର ଜ୍ୟୋସ୍ନା ଆସୁଛି ଆଉ ଯାଉଛି । କେତେ ଛଳରେ ସେ ମାଉସୀ ପାଖକୁ ଆସୁଛି ଏବଂ ବୋଉ ଓ ମାଉସୀ କଥାବାର୍ତ୍ତା ହେଉଛନ୍ତି ବୋଲି ଶିଷ୍ଟାଚାରକୁ ଜଗି ଫେରି ପଳାଉଛି । ଝିଅଟି ଦେଖିବାକୁ ସୁନ୍ଦର । ବୟସ ସତର ଅଠର ହେବ । ସୁନ୍ଦର ସୁନ୍ଦର ଜାମାକୁର୍ତ୍ତା ପିନ୍ଧୁଛି । ଲମ୍ବ ବେଣୀଟିକୁ ପିଠିଆଡ଼ୁ ସାମନାକୁ ଆଣି ବେଳେ ବେଳେ ଡାହାଣ ହାତରୁ ବାଁ ହାତକୁ ଏବଂ ବାଁ ହାତରୁ ଡାହାଣ ହାତକୁ ବୁଲାଇ ଦେଇ ବିଭିନ୍ନ ଭଙ୍ଗିରେ ଖେଳୁଛି । ବିନୋଦିନୀ କହୁଛନ୍ତି
—କଅଣ ଏତେ ଭାବୁଛ ମ ପଦ୍ମା ନାନୀ ?

ଗାଉଁଲି ହିସାବରେ ନାନୀ ବୋଲି ସେ ଡାକନ୍ତି । ପିଲାଦିନର ସାଙ୍ଗ । ଏକା ସାଙ୍ଗରେ ଖେଳାଖେଳି ପଢ଼ାପଢ଼ି । ବୟସରେ ଜଣେ ଆରଜଣକଠାରୁ ବର୍ଷକର ବଡ଼ । ତେଣୁ ନାନୀ ଡାକବା ।

"ପୁଅ କଥା ପଚାରୁଚ ? ବାଇଶଟାବେଳେ ତ ଖବର ଗଲା । କଲେଜରୁ ଫେରିଲେ ତ ଆସିବ" ।

ଦୀର୍ଘ ନିଃଶ୍ୱାସ ଟାଣି ବିମର୍ଷ ବଦନରେ ହସିବାର ଛଳନା କଲେ ପଦ୍ମବାସିନୀ । ଆଖି ଦୁଇଟା ଛଳଛଳ, ଜଳଜଳ, ଢଳଢଳ । ଚିନ୍ତା ଗଭୀର ସମୁଦ୍ର ଭିତରେ ବୁଡ଼ୁଚି ଆଉ ଉଠୁଚି ।

ବିନୋଦିନୀ କହିଲେ—ବିରାଦ କରିବ—ଜ୍ୟୋସ୍ନା ଗୋଟାଏ ଗୀତ ଗାଇବ ? ସେ ଭଲ ଗାଏ, ଭଲ ବଜାଏ । ନାଚ ବି ଶିଖିଚି ସୁନ୍ଦର ।

କଥାଟାର ମୋଡ଼ ମୋଡ଼ିବା ପାଇଁ ପଦ୍ମବାସିନୀ ପଚାରିଲେ— ଆଉ ପିଲାଗୁଡ଼ାକ କାହାନ୍ତି କି ଭଉଣୀ ? ସକାଳେ ଯାହା ଦେଖିଲି ସିନା—କୁଆଡ଼େ ଯାଇଚନ୍ତି ?

ସ୍କୁଲକୁ ଯାଇଚନ୍ତି ପରା—ଏଇନେ ଆସିପିବେ ଯେ" ? ପଚାରିଦେଲେ ପଦ୍ମା—"ଜ୍ୟୋସ୍ନା ତ ଆଜି ସ୍କୁଲକୁ ଯାଇନାହିଁ" ? "ଜ୍ୟୋସ୍ନା ଏକାଦଶ ଶ୍ରେଣୀରେ ପଢ଼େ"—ବିନୋଦିନୀ ଉତ୍ତର ଦେଲେ "ସେ ପରା ଆଜି ଗଲାନାହିଁ । କହିଲା—ମାଉସୀ ଆସିଚନ୍ତି ମୁଁ ଯିବିନାହିଁ" ।

ଡ଼ାକିଲେ—"ହଇ ଲୋ ଜ୍ୟୋସ୍ନା" ।
ଆର ଘରୁ ଉତ୍ତର ଶୁଭିଲା—"ବୋଉ" ।
ଆର ଘରେ ଥାଇ ଝିଅ ସବୁ ଶୁଣୁଚି ।
"ଅଇଲୁ ଏଣିକି । ତୋ ମାଉସୀ ଖୋଜୁଚନ୍ତି ପରା" ।
ହଲଚଲି, ନାଚ ନାଚିକା ଚାଲି ଆସିଲା ଜ୍ୟୋସ୍ନା ।

ଏଥିମଧ୍ୟରେ ସେ ବେଶ ବଦଳାଇଛି । ତା ଆଡ଼କୁ ଅନାଇ ଅଳ୍ପ ହସି ପଦ୍ମା ଡ଼ାକଲେ—ଆ ଝିଅ !

କୋଳ ଉପରକୁ ପ୍ରାୟ ଢଳି ଆସିଲା ଜ୍ୟୋତ୍ସ୍ନା । ମାଉସୀ ତାକୁ କୋଳକୁ ଉଠାଇ ନେଲେ । ଗୋଟିପଣେ ତାଙ୍କ କୋଳକୁ ଢଳିପଡ଼ିଲା ଜ୍ୟୋତ୍ସ୍ନା । ଧୀରେ ଧୀରେ ତା ମୁଣ୍ଡ ଆଉଁସିବାକୁ ଲାଗିଲେ ପଦ୍ମବାସିନୀ ।

କହିଉଠିଲେ ବିନୋଦିନୀ--ନରୁଟିକି ମୁଁ କେତେ ସ୍ନେହ କରେ ନାନୀ ଜାଣିଛ ? ଦେଖିନାହିଁ ସିନା, କିନ୍ତୁ ତାର କଥା ଆମ ଘରେ ସବୁବେଳେ ପଡ଼େ । କେତେଥର ଚପରାଶିଙ୍କି ପଠାଇଛି । ଡ଼ାକିଛି 'ପୁଅ ଆସିବୁ' । କିନ୍ତୁ ଲାଜକୁଳାଟା ଜମାରୁ ଆସେ ନାହିଁ । ଜ୍ୟୋତ୍ସ୍ନା ତାକୁ କେମିତି ଚିହ୍ନିଛି ? ତା' ଉପରେ ଇଆର ଭାରି ରାଗ । କହେ "ସେ ତ ବଡ଼ଲୋକ । ନ ଆଇଲେ ନାହିଁ । ଭୁଆଣ୍ଟାରେ ବୋଉ ତୁ କିଆଁ ତାଙ୍କ ପାଇଁ ଏତେ ଭାବ ହେଉଚୁ" ?

ପଦ୍ମବାସିନୀ ବିନୋଦିନୀ ମୁହଁଆଡ଼କୁ ଏକ ଲୟରେ ଅନାଇ ରହିଲେ—ସତେ କି ସେ ବିନୋଦିନୀର ମନ ଭିତରେ ବୁଡ଼ ଦେଇ ଅଣ୍ଡାଳି ଦେଖୁଚନ୍ତି—କଅଣ ଅଛି ବାରିବା ପାଇଁ । ଏଣେ ଗୋଟିଏ ହାତରେ ଜ୍ୟୋତ୍ସ୍ନାର ପିଠି ଆଉଁସି ଦେଇ ଦେଇ ପରୀକ୍ଷା କରି ନେଉଚନ୍ତି—ତାର ନାଡ଼ି ଲକ୍ଷଣ । ନରୋତ୍ତମର କଥା ଉଠିଲାରୁ ଜ୍ୟୋତ୍ସ୍ନାର ଧମନୀ-ଧାବନରେ ପରିବର୍ତ୍ତନ ଆସୁଚି କି ନାହିଁ । ଯଦି ଆସୁଚି, ତାର ଲକ୍ଷଣଟି କଅଣ ? ଦେଖିଲେ ଜ୍ୟୋତ୍ସ୍ନାର ଦେହରେ ମୃଦୁକମ୍ପନ ଖେଳି ଯାଉଚି । ବୟସ ହେଲାଣି । ଶିକ୍ଷା ମଧ୍ୟ ପାଇଲାଣି । ହୁଏତ ନରୋତ୍ତମ କଥା ତାଙ୍କ ଘରେ ବାରମ୍ବାର ପଡ଼ୁଥିବ । ସମ୍ଭବତଃ ବାପ ମାଆଙ୍କ କଥାବାର୍ତ୍ତାରୁ କିଛିତ ଆଭାସ ସେ ପାଇ ପାରିଥିବ ।

ପଦ୍ମବାସିନୀ ଚମକିତ ହୋଇପଡ଼ିଲେ । ଆଗ ଆଉ ନାରଣ ମନ୍ଦିରେ ପଡ଼ି କୌଣସି ଗୋଟିଏ ମୀମାଂସା ବା ସିଦ୍ଧାନ୍ତର ସୀମା ରେଖା ଦେଖିପାରୁ ନାହାନ୍ତି । ଅନବରୁଦ୍ଧ ସଦ୍ୟୋ ଉଠି ଆସୁଥିବା ଦୀର୍ଘ ଶ୍ୱାସଟିକୁ ଚେଷ୍ଟା କରି ସେ ଗୃପିନେଲେ । କୋଳ ଭିତରେ ଢ଼ୁଳେଇ ପଡ଼ୁଚି ଜ୍ୟୋତ୍ସ୍ନା । ଝୁଲୁଚି । ନର୍ଗିବ ନସ୍ତେଜ ଜଣାପଡ଼ୁଚି । ହଠାତ୍ ପରିବର୍ତ୍ତନ ଅନୁଭୂତ ହେଉଚି ତାର ଅଙ୍ଗ ପ୍ରତ୍ୟଙ୍ଗରେ । ପଦ୍ମା ଭାବିଲେ—ସ୍ୱାଭାବିକ କଥା । ଏଥିରେ ବିଚିତ୍ରତା କଅଣ ଅଛି ? ସେ ଆଜି ସ୍କୁଲକୁ ଯାଇନାହିଁ । ଅପେକ୍ଷା କରି ରହିଚି ନରୋତ୍ତମ ଆସିବ ବୋଲି ।

କିଏ ଆସି କହିଲା—କିଏ ଜଣେ ଆସିଚନ୍ତି । କହୁଚନ୍ତି ବୋଉ ଡ଼ାକିଚନ୍ତି । କହ ମୁଁ ଆସିଚି ।

ଉଠିଗଲେ ବିନୋଦିନୀ । କହିଲେ—ଡ଼ାକିଆଣ ଭିତରକୁ । ମୋ ପୁଅ ସେ । ମୁଁ ଯାଏଁ, ପଚ୍ଛରେ ଏ ଘରେ ତାର ଲାଜ କାହିଁକି ?

ବିଚଳିତ ହୋଇପଡ଼ିଲେ ପଦ୍ମବାସିନୀ । କିନ୍ତୁ କୋଳରେ ତାଙ୍କର ଜ୍ୟୋତ୍ସ୍ନା, ଅଧିକ ନସ୍ତେଜ ଜଣାପଡ଼ୁଚି । ଉଠୁନାହିଁ ।

ବାହାର ଘରେ ବିନୋଦିନୀଙ୍କ ପାଟି ଶୁଭିଲା—"ଆଲେ ମୋ ପୁଅଟା, ଏଠିଠାରେ ଠିଆ ହୋଇଚ ? ଆସୁନଉଁ ଭିତରକୁ" ?

"ନମସ୍କାର, ବୋଉ କାହାନ୍ତି" ?

"ଭିତରକୁ ଆ । ବୋଉ ଅଛି କି ପୁଅ ? ମଲାଣି । ମୁଁ ଆଜିଠଉଁ ତୋ ବୋଉ । ଏତେ ଖବର ପଠାଇଥିଲି—ଆସୁ ନଥିଲୁ ପରା । ମୁଁ ତୋର କିଏ କି ପୁଅ ! ଆସୁନୁ" ?

ହସି ହସି ନରୋତ୍ତମ ଘର ଭିତରକୁ ପଶି ଆସିଲା ।

ପଦ୍ମବାସିନୀ ବୁଢ଼ୀ ରହିଚନ୍ତି ପରଦା ଆଢ଼ୁଆକୁ । ମାସ ଉଠିପାରୁ-ନାହାନ୍ତି । କୋଳରେ ଜ୍ୟୋସ୍ନା, ଯେମିତି ସେମିତି ଶୋଇ ରହିଚି । ବିନୋଦିନୀ ଡ଼ାକଦେଲେ—"ଇଲୋ ଜ୍ୟୋସ୍ନା ! ନରୁ ଭାଇନାକୁ ଖୋଜୁଥିଲୁ ପରା, ଉଠ୍, ମୁଣ୍ଡିଆ ମାର" ।

ନରୋତ୍ତମ ବୋଉଙ୍କ ଗୋଡ଼ ତଳେ ମୁଣ୍ଡ ଲଗାଇଲା ।

ତାଙ୍କର କୋଳ ଭିତରେ ମୁହଁ ଲୁଚାଇ ଜ୍ୟୋସ୍ନା କହିଲା—ନମସ୍କାର କରୁଚି ବୋଉ ! ସେ ତ ବଡ଼ଲୋକ । ଆମ ଘରକୁ ପୁଣି ଅଇଲେ କେମିତି ମ ? ଆସୁ ନ ଥିଲେ ପରା ।

ଚୌକୀ ଖଣ୍ଡିକ ଉପରେ ବସି ପଡ଼ୁପଡ଼ୁ ନରୋତ୍ତମ ଠଉରାଇ ନେଲା ଜ୍ୟୋସ୍ନାଟି କିଏ । କହିଲା—"କାହିଁକି ଆସନ୍ତି ? ତୁ କଅଣ ଡ଼ାକଥିଲୁ କି" ?

ଉଠିପଡ଼ିଲା ଜ୍ୟୋସ୍ନା । ଠିଆ ହୋଇଗଲା । ପାଟି ତାର ଏକପ୍ରକାର ଶୁଖି ଯାଉଚି । ତଥାପି ଆପଣାକୁ ସମ୍ଭାଳି ନେଇ କହିଲା—ମୁଁ ନ ଡ଼ାକିଲେ ସୁଦ୍ଧା ବୋଉ ତ କେତେଥର ଖବର ପଠାଇ ଡ଼କାଇଚନ୍ତି ।

ହସିଉଠି ଉତ୍ତର ଦେଲା ନରୋତ୍ତମ—"ଆସିଲି ପରା ଆଜି" । ମୃଦୁହସି ଜ୍ୟୋସ୍ନା ହାତ ଦୋଟି ଯୋଡ଼ି କହିଲା—ହଉ, ତେବେ ଆଜି ଆମେ ନମସ୍କାର କଲୁଁ । ଗ୍ରହଣ କର "

ଛଳନାକୋପ ପ୍ରକାଶ କରି ବିନୋଦିନୀ କହି ଉଠିଲେ—"ଯା, ଯାଃ ! ବଡ଼ ଦୁଷ୍ଟ ତୁ ହେଲୁଣି ଜ୍ୟୋସ୍ନା । ଚଞ୍ଚଳ ଯା ନିଜ ହାତରେ ଗୁହା କରି ଆଣିବୁ ।

ବେଣୀ ନଚାଇ ମୃଦୁ ମୃଦୁ ହସି ହସି ଜ୍ୟୋସ୍ନା ଭିତରକୁ ଚାଲି ଯାଉ ଯାଉ କହିଲା—ହେଲା ତ, ଯାଉଚି ମୁଁ ଏଇ ନଅଁ ଭାଇନାଙ୍କ ପାଇଁ ଚାହା ତିଆରି କରି ଆଣିବ ।

ମୃଦୁହସି ନରୋତ୍ତମ ଉତ୍ତର ଦେଲା—ତୋ ଚାହା ମୁଁ ଖାଇଲେ ତ ଏକା ? ମୁଁ ତ ଏଇନେ ଖାଇ ଆସିଲି । ଆଉ କିଛି ଖାଇବି ନାହିଁ ।

ଫେରିପଡ଼ିଲା ଜ୍ୟୋସ୍ନା—"ଖାଇବ ନାହିଁ ? ସତ କହୁଚ" ?

ଚାରୋଟି ଆଖି ମିଳିଗଲା । ସତେ କି ଅଭିମାନରେ ଜ୍ୟୋସ୍ନା ଫୁଲିଉଠୁଚି । ମୁହଁ ଛଳଛଳେଇ ଆସୁଚି । ଏରୁଣ୍ଡି ବନ୍ଧକୁ ଧରି ପରଦା ଆଡ଼େଇ ନରୋତ୍ତମ ଆଡ଼କୁ ଅନାଇ ରହିଲା ଜ୍ୟୋସ୍ନା । ଏଇ ତାର ପ୍ରଥମ ଦୃଷ୍ଟି ପାତ । ନଅଁର ଏହି ପହିଲି ଦେଖା । ଆଧୁନିକ ଯୁବକ ଯୁବତୀଙ୍କ ମଧ୍ୟରୁ କେତେକଙ୍କର ସବୁ କଥା ଏହିଭଳି ହଠାତ୍ ହଠାତ୍ । ପ୍ରଥମ ଦେଖା ମାତ୍ରେ, ପ୍ରଥମ ପରିଚୟ ଓ ମାନ ଅଭିମାନ ।

ନରୋତ୍ତମ କିଛି ବୁଝିପାରୁନାହିଁ । ବୁଝିବାକୁ ଚେଷ୍ଟା କରୁଚି । ମନସ୍ତତ୍ତ୍ୱର ଛାତ୍ର ସେ । ମନେ ମନେ ଭାବୁଚି ଏମ୍. ଏ.ଟା ପାସ କରି ସେଇ ବିଷୟରେ ରିସର୍ଚ୍ଚ କରିବ ।

କଲେଜ ପଢ଼ା ତେଣିକି ଥାଉ, ମନସ୍ତତ୍ତ୍ୱ ତେଣିକି ଥାଉ, ହାଇସ୍କୁଲ ଦୁଆର ମାଡ଼ିନାହାନ୍ତି ପଦ୍ମବାସିନୀ । ମାତ୍ର ନରୋତ୍ତମ ଓ ଜ୍ୟୋସ୍ନା ଆଡ଼କୁ ସେ ବାରମ୍ବାର ଦୃଷ୍ଟି ଫେରାଇ ଅନାଉଚନ୍ତି, ଏବଂ ଭାବୁଚନ୍ତି—ମଙ୍ଗଳ ସୂଚନା । ଚଣ୍ଡେଶ୍ୱରୀଙ୍କୁ ଡାକି ଜଣାଉଚନ୍ତି

ମନେ ମନେ—'ମାଆ ଗୋ ! ଜ୍ୟୋତ୍ସ୍ନାର ମନକାମନା ପୂର୍ଣ୍ଣ କର । ଜୟଯୁକ୍ତ ହେଉ ତା'ର ମନୋରଥ' ।

ପଚାରୁଚି ଜ୍ୟୋତ୍ସ୍ନା—କଅଣ କହୁଚ ନରୁ ଭାଇନା ? ମୋ' ଘ୍ର ତୁମେ ଖାଇବ ନାହିଁ ? ସତ କହୁଚ ?

ହଁ ନାହିଁ କିଛି କହୁନାହିଁ ନରୋତ୍ତମ । କେବଳ ମୃଦୁ ମୃଦୁ ହସୁଚି ।

ଉତ୍ତର ଦେଲେ ବନୋଦେମା—"କେତେ ଧମକାଉଚୁ ଲୋ ଝିଅ ? ଆଣୁନୁ ବେଗି" ।

ମୃଦୁ ମୃଦୁ ହସୁଚି ନରୋତ୍ତମ ।

ପଦ୍ମବାସିମାଙ୍କ ମନଟା ମେଘମୁକ୍ତ ହୋଇ ଆସୁଚି । ମନେ ମନେ ଡାକୁଚନ୍ତି ସେ କୁଳଦେବତାଙ୍କୁ—ମାଆ ଗୋ ! ଯାହା ମୋର ଜୟଯୁକ୍ତ ହେଉ । ଧନ ମୋର ଫେରିଆସୁ ମୋ କୋଳକୁ । ଭୁଲିଯାଉ ତାର ପଛ ସ୍ୱପ୍ନ, ପଛ କଥା ।

ପଦ୍ମବାସିମା କହି ଉଠିଲେ—ଆଣୁନଉଁ ମା ? ନରୁଟା କଅଣ କହିବ ? ବୁଝିପାରୁନଉଁ—ମୌନଂ ସମ୍ମତି ଲକ୍ଷଣଂ ।

ବୁଝିପାରିଲା ପାଠୋଇ ଝିଅ ଜ୍ୟୋତ୍ସ୍ନା । ବୁଝି ପାରିଚନ୍ତି ବନୋଦେମା—ପଦ୍ମବାସିମାଙ୍କର ସମ୍ମତି ଲକ୍ଷଣଟା ପ୍ରକାଶ ପାଇଗଲା । ଏ କଥାଟା ଠିକ୍ । କିନ୍ତୁ ନରୋତ୍ତମର ମନଗହ୍ୱରର ଦୂରତ୍ୱ କଳି ହେଉନାହିଁ ତ ! ସେ ଖାଲି ଚୁହିଁ ରହିଚି ଏବଂ ମୃଦୁ ମୃଦୁ ହସୁଚି ମାତ୍ର ।

ନରୋତ୍ତମ ରିସର୍ଚ୍ଚ ଆରମ୍ଭ କରି ଦେଇଚି । ମାତ୍ର ଥେସିସ୍ ଲେଖି ପାରୁନାହିଁ । ଆଉ କିଛିଦୂର ଗଲେ ଲେଖିବାକୁ ଆରମ୍ଭ କରିଦେବ । ବୋଉଙ୍କଆଡ଼େ ଚାହିଁଲା । ବୋଉଙ୍କ ଚିନ୍ତାର ଦୌଡ଼ କଳିବା ପାଇଁ ଭାବିଲା—ବୋଧହୁଏ ବୋଉ ଆସିଚନ୍ତି ଏଇ ଅଭିପ୍ରାୟ ନେଇ । ପୁଅକୁ ତାଙ୍କର ଫେରାଇ ନେବା ପାଇଁ । ଯୋଗାଡ଼ ଯନ୍ତ୍ର ମଧ୍ୟ ବନ୍ଦ କରିନାହାନ୍ତି । ଅସ୍ତ୍ର ରୂପେ ବ୍ୟବହୃତ ହେବାକୁ ଜ୍ୟୋତ୍ସ୍ନା ମଧ୍ୟ ଉପଯୁକ୍ତ ତାଲିମ ପାଇଚି ଏବଂ ଯଥାର୍ଥ ରୂପେ ପ୍ରସ୍ତୁତ ହୋଇ ସାରିଚି । କିନ୍ତୁ କିନ୍ତୁ—

ମନ ଭିତରେ 'କିନ୍ତୁଟି' ରୂପ ନେଉଚି—ବାଷ୍ପମୟ ମେଘ ଖଣ୍ଡ ଧୀରେ ଧୀରେ ଘନୀଭୂତ ହୋଇପଡ଼ିଚି । ଠପ୍ ଠପ୍ ଝପ୍ ଝପ୍ ଗଡ଼ିପଡ଼ୁଚି ତଳକୁ, ଆଖିବାଟେ ଜଳବିନ୍ଦୁ । ବିନ୍ଦୁ ପରେ ବିନ୍ଦୁ । ହସ ହସ ମୁହଁଟି ମଳିନ ପଡ଼ିଯାଉଚି, ଝାଉଁଳି ପଡ଼ୁଚି । ଧୀରେ, ଅତି ଧୀରେ ଗୋଟିଏ ଦୀର୍ଘ ନିଃଶ୍ୱାସ ଭିତରେ ବାଷ୍ପମୟ ଚିନ୍ତାର ରୂପ ଧରି ଶରୀର ଭିତରେ ଲୁଚିଥିବା ଅଶରୀର ଆତ୍ମାର ଅସ୍ପଷ୍ଟ ସ୍ପନ୍ଦନ ଧ୍ୱନି ପ୍ରକାଶ କରି ଯାଉଚି । ମନ ବିକଳ-ସ୍ୱରରେ ଅପ୍ରକାଶିତ ଭାବେ ଡାକ ଛାଡ଼ୁଚି—'ଅନୁରାଧା, ରାଧା' !

ପଦ୍ମବାସିନୀ ଠଉରାଇ ନେଲେଣି ପୁଅର ମନ କଥା । ନିଜ ମଥାଟିକ ପଛଆଡ଼କୁ ଟଳାଇ ନେଇ ଉପର ଆଡ଼କୁ ଅନାଇଲେ । ଆଖିପତା ତଳେ ଧୀରେ ଧୀରେ ଜକେଇ ଆସୁଚି ଅଶ୍ରୁଧାରା । ବିନୋଦିନୀ କହି ଉଠିଲେ—ଯାଆ ମା, ଠିଆ ହୋଇ ରହିଲୁ କାହିଁକି ? କିଛି ଜଳଖିଆ ଆଣିବୁ । ଚଞ୍ଚଳ ଆଣ ।

କିଛି ସମୟ ନୀରବରେ ଅନାଇ ଥିଲା ଜ୍ୟୋତ୍ସ୍ନା । ଆଉ ଅନାଇ ପାରିଲା ନାହିଁ । ଏତେ ଗଭୀର ଜଳ ଭିତରକୁ ତାର ବନସୀ

ତୋର ପାଉନାହିଁ । ଗଙ୍ଗାର ଜଳର ମାଛ ତାର ବନସୀ ଥୋପ ଗିଳୁନାହାନ୍ତି । ସେ ସ୍ବଳଗଲା ଭିତରକୁ । ମାସ ହସଟି ତାର ମଉଳ ଯାଉଛି । ମନ ଭିତରେ ଆଶାର ଫୁଲ ବନ୍ଧୁଥିଲା । ଥମ୍ଭି ଯାଉଚି ହଠାତ୍ କାହିଁକି, ସେ କିଛି ଜାଣିପାରୁ ନାହିଁ ।

ବନୋଦେମା ଘରଦ୍ୱାର ବୁଲାଇ ଦେଖାଇଲେ । ପଦ୍ମବାସିନୀ କହିଲେ—"ପୁଅ, ମୁଁ ଏଠି କେତେଦିନ ରହିବ । ଆମେ ଏକା ସାଇର ଦି'ଭଉଣୀ । ମାଉସୀ ତୋର ମାଆ ପରି । ତୁ ପ୍ରତିଦିନ ଆସୁଥିବୁ । ଏମାନେ ତମର ଅତି ଆପଣାର" ।

ବନୋଦେମା କହିଲେ—"ମୋ ପୁଅଟା, ମୋ ଘରକୁ ଆସିବ ନାହିଁ ! ଏତେ ଭଲପାଏ ଜ୍ୟୋତ୍ସ୍ନା । ତତେ କେତେଦିନୁ ଖୋଜୁଚି । ଉଚାଉଚି, ତୁ ଆସୁନାହୁଁ ? ସେ କଣ ତୋର ପର ? ମଉସା କେତେଥର ଖୋଜଚନ୍ତି । ବୋଡ଼ିଂରେ ନରହି ଏଇଠ ରହିବୁ ଏଥର । ମୁଁ ତାର ବରାଦ କରିଦେଉଚି । ବୋଉ ତ ତୋର କେବେ ଅରାଜ ହେବେ ନାହିଁ" ।

ମୃଦୁ ମୃଦୁ ହସୁଚି କେବଳ ନରୋତ୍ତମ । କିଛି ଉତ୍ତର ଦେଉନାହିଁ । ପଦ୍ମବାସିନୀ କହିଲେ—ଆଜ ଏଠି ରହିଯା ପୁଅ । ମୁଁ ତତେ କେତେଦିନ ହେଲା ଦେଖିନାହିଁ । ଟିକେ ଆଖିପୂରାଇ ଦେଖିନିଏ । ଆଜ ତୁ ମୋ ସାଥିରେ ଖାଇବୁ !

"ମୁଁ ଆଜ ରାନ୍ଧିଦେବ ମାଉସୀ"—କହି ଉଠିଲା ଜ୍ୟୋତ୍ସ୍ନା ।

ହସୁଚନ୍ତି ବନୋଦେମା । କହିଲେ—ଆଜ ତୁ ଗୋଟାଏ ଗୀତ ଗାଇବୁ । କାଲିକ ନାଚଟାଏ ହବ । ପୁଅ ମୋର ଦେଖିବ ।

ଗମ୍ଭୀର ମେଘପରି ମେଦୁର । ସାଗରପରି ସୁଦୂର ବ୍ୟାପୀ । ସୀମା ସରହଦ ଜଣା ପଡ଼ୁନାହିଁ । କାହାରି କଥା ସ୍ମରିଲା ନାହିଁ ନରୋତ୍ତମ । ରହିଲା, ଗୀତ ଶୁଣିଲା, ବୋଉଙ୍କ ସାଙ୍ଗରେ ଜ୍ୟୋତ୍ସ୍ନାର ତରକାରି ଖାଇଲା । ଅନେକ ଗପ, ଅନେକ କଥା । ନବୀନବାବୁ ଅତି ଆଦର କଲେ । ଅନେକ ଅଭିମାନ କଲେ । ତହିଁଆର ଦିନ ଭୋର ହେଲା । ନରୋତ୍ତମ ନିତ୍ୟକର୍ମ ବଢ଼ାଇଲା । ଜ୍ୟୋତ୍ସ୍ନା ଆଣି ଆପଣାର ଗଦାଏ ଲେଖା, ଗଳ୍ପ, କବିତା ପଢ଼ି ଶୁଣାଇଲା । ନରୋତ୍ତମ ସବୁ କଥାକୁ ଗୋଟିଏ ଉତ୍ତର ଦେଲା 'ଖୁବ୍ ଭଲ ହୋଇଚି । ଖୁବ୍ ସୁନ୍ଦର" ।

ଦଶଟା ବେଳକୁ କଲେଜ ଚାଲିଗଲା । ପଦ୍ମବାସିମା କିଛି ଭାବି ପାରୁନାହାନ୍ତି । ପରିବର୍ତ୍ତନ ହେଲା କି ନାହିଁ ଜାଣିପାରୁ ନାହାନ୍ତି ।

ଜ୍ୟୋତ୍ସ୍ନା ଅନୁନୟ କରି କହିଲା—ମୋର ଭଲ ପଢ଼ାପଢ଼ି ହେଉନାହିଁ । ସ୍କୁଲରେ ଶିକ୍ଷୟିତ୍ରୀ ଏବଂ ଘର ଟ୍ୟୁସନ ମାଷ୍ଟର-ମାନଙ୍କର ପଢ଼ାଇବାରେ ଆନ୍ତରିକତା ନାହିଁ । ତୁମେ ଭାଇନା, ମତେ ନ ପଢ଼ାଇଲେ ମୁଁ ଫେଲ୍ ହୋଇଯିବି । ତୁମକୁ ମୋରାଣ, ମୋରାଣ, ମୋରାଣ, ଆସୁଥିବ, ମୋ ପଢ଼ା ବୁଝିଯାଉଥିବ ନିଶ୍ଚୟ ଇ

"ଆସିବି, ନିଶ୍ଚୟ ଆସୁଥିବି । ତୋତେ ପଢ଼ାଇଦେଇ ଯାଉଥିବି । କିନ୍ତୁ ତୁ ପଢ଼ିଲେ ହେଲା" ।

କାଲନ୍ତକୁ ଆଉକି ଛାଡ଼ାହୋଇ ଜ୍ୟୋତ୍ସ୍ନା ଚାହିଁ ରହିଚି ଏବଂ ନରୋତ୍ତମ ହସି ହସି ପଛକୁ ଚାହିଁ ଥରେ ହସିଦେଇ ମୁହଁ ବୁଲାଇ ନେଇ ନିଜ ବାଟରେ ଚାଲିଯାଉଚି ।

ଆଠଦିନ ପରେ ପଦ୍ମବାସିନୀ ପୁଅକୁ ନେଇ ଗାଁକୁ ଫେରିଲେ । ବାହାପାଇଁ ଗୋଟିଏ ମାତ୍ର କଥା—ଜ୍ୟୋତ୍ସ୍ନାଟି ସୁନ୍ଦର । ସୁନ୍ଦର, ସମ୍ଭ୍ରାନ୍ତ ଘରର ପିଲା । ମୁଁ ସ୍ଥିର କରିଛି ତାକୁଇ ବୋହୂ କରି ଆଣିବି । ତୁ ତାଙ୍କ ଘରକୁ ଯାଆ ଆସ କରୁଥିବୁ ।

ପୁଅ ଉତ୍ତର ଦେଲା—"ବୋହୂ କରି ଆଣିବାକୁ ମନ କରିଛ ତ ଆଣିବ । ମୁଁ କିଆଁ ଯାଆ ଆସ କରିବି ବୋଉ" ?

ବୋଉ ଫେରିପଡ଼ି ଅନାଇ ରହିଚନ୍ତି ପୁଅ ମୁହଁକୁ । ପୁଅ ମୃଦୁ ମୃଦୁ ହସୁଛି ।

× × × ×

ନବୀନ ବାବୁ ବିନୋଦିନୀଙ୍କି ଏକୁଟିଆ ଦେଖି କହୁଚନ୍ତି— "ଯାହାହେଉ, ଝିଅଟି ଭଲ ପାତ୍ର ପାଇଗଲା । ଧନସମ୍ପତ୍ତି ଖୁବ୍ କମ୍ ନାହିଁ । ମାଆଟି ଆଉ ପୁଅଟି । ସ୍ୱଭାବ ଚରିତ୍ରରେ ନଲୁକୁ ଖୁଣି ଦେବାକୁ କିଛି ନାହିଁ । ଭଲ ପଡ଼େ ମଧ୍ୟ" ।

ବିନୋଦିନୀ କହି ଉଠିଲେ—ଆଉ ମୋ ଝିଅଟି ? କୋଉ କଥାରେ ଊଣା କରିଚ ମୁଁ ତାକୁ ?

"ମନ ଯେନ ଫଳ
ତୀର୍ଥ ଯେନ ଜଳ" ।

ଭଗବାନ ତାକୁ ନବୋଢ଼ମଟି ହାତରେ ଦିଆଇ ଦିଅନ୍ତେ ନି—ତେବେ ଯାଇ ଆମ ମନସ୍କାମନା ପୂର୍ଣ୍ଣ ହୁଅନ୍ତା ।

ହସି ଉଠିଲେ ନବୀନ ବାବୁ—"ହେଲା ତ ଆଉ ହବ କଅଣ ? ମା ତ ରାଜି । ପୁଅ ତ ରାଜି । ଆଉ କଅଣ ବାକି ? ନାମକୁ ମାତ୍ର କେଇଟା ଦିନ ପରେ । ତା'ର ଠିକ୍ ସମୟରେ ଠିକ୍ ଭାବରେ ସମ୍ପନ୍ନ ହୋଇଯିବ ।

ଆର ଘରେ ଆଡ଼ୁଆଳରେ ଥାଇ ବାପ ମାଆଙ୍କ କଥା ଶୁଣୁଥିଲା ଜ୍ୟୋତ୍ସ୍ନା । ମନେ ମନେ ହସିଉଠି ଦି'ହାତରେ ନମସ୍କାର କରି ପକାଇଲା—ମା, ମଙ୍ଗଳା ! ମୋ ମନୋବାଞ୍ଛା ପୂର୍ଣ୍ଣ ହେଉ !

---

# ଏଗାର

ଖରାବେଳେ ଅଣଓସାରି ତକ୍ତପୋସ ଖଣ୍ଡିକ ଉପରେ ଏକୁଟିଆ ବସି ଅନୁରାଧା ଗ୍ରେଟ ଝିଡ଼କିଟି ବାଟେ ବାହାର ଆଡ଼କୁ ଅନାଇଛି । ପ୍ରେମ ବନ୍ଧା ଚଉଖୁଣ୍ଟିଆ ଆକାଶଟିଏ, ଆଉ କେତୋଟି ଗଛଲତା ଦିଶୁଛି । ମଝିରେ ମଝିରେ ଲୁହା ଛାତର ରେଲିଂ କେତୋଟି ଉପରୁ ଚାଳଯାକେ ଚୂନ ଗାର ପକାଇଛି । ଶୂନ୍ୟ ଆକାଶରେ ତାଳ ପତ୍ର ଦୋହଲୁଛି । ପବନର କମ୍ପନ ମନ ଭିତରେ ଅନୁଭୂତ ହେଉଛି । ଉଜ୍ଜ୍ୱଳ ସୂର୍ଯ୍ୟଟା ଦକ୍ଷିଣଆଡ଼େ ଢଳୁଛି । ଶୀତ ଦିନରେ ଦକ୍ଷିଣାୟନ-ଯାତ୍ରୀ ସୂର୍ଯ୍ୟ କଢ଼େଇ କଢ଼େଇ ଗୃଲଚନ୍ତି ପଶ୍ଚିମ-ଆଡ଼େ ବୁଡ଼ିଯିବା ପାଇଁ । ଗଭୀର ଚିନ୍ତାରେ ଅନୁରାଧାର ମନ ବୁଡ଼ି ଯାଇଛି । ମନର ଦୋଳାରେ ସେ ଝୁଲୁଛି । ଶୂନ୍ୟ ଚିନ୍ତାରେ ସେ ଭାସୁଛି । ଏ ଘରେ ସେ ଏକ ପ୍ରକାର ବନ୍ଦିନୀ । ଅନେକ ଦିନୁ ନାମା ଚାଲି ଯାଇଚନ୍ତି । ଏ ଘରେ ଦିଅର ଭାଉଜଙ୍କ ଢଙ୍ଗ ଦେଖି ସେ ଏକ ପ୍ରକାର ଅଚଳ ହୋଇ ଆସୁଛି । ଅଙ୍ଗ ଅବୟବ ତାର ଦୁର୍ବଳ ହୋଇ ପଡ଼ୁଛି । କିନ୍ତୁ କଅଣ କରିବ ? କି ଉପାୟ ଅବଲମ୍ବନ କରିବ ? କାହା ଆଗରେ କଅଣ କହିବ ? କିଏ ବିଶ୍ୱାସ କରିବ ଏବଂ କେମିତି ସାହାଯ୍ୟ କରିବ । ଧନେଶ୍ୱର ଦୁର୍ଦ୍ଦାନ୍ତ । ତାକୁ ଗାଁ ପଡ଼ିଶାରେ ସମସ୍ତେ ଭୟ କରନ୍ତି, ଘୃଣା କରନ୍ତି ସତ, ମାତ୍ର କିଛି କହିବାକୁ ସାହସ କରନ୍ତି ନାହିଁ ।

ଅନୁରାଧା ମନେ ମନେ ଦୋହଲୁଛି । ମନଟି ମାରିଦେଇ ଏକ ଲୟରେ ଖିଡ଼କିବାଟେ ଅନାଇ ରହିଛି । ଗଞ୍ଜା ଭିତରେ ତେତେବେଳେ କେହି ଆଉ ନାହାନ୍ତି । କେବଳ ହାରାମଣି ଅଛି । ଅନ୍ୟ ଗୋଟିଏ କୋଠରି ଭିତରେ ଅନୁରାଧାର ଅଜ୍ଞାତସାରେ ଧନେଶ୍ୱର ଘର ଭିତରକୁ ପଶିଲା । ଧୀରେ ଧୀରେ ଆସି ଅନୁରାଧାର ଖଟଟି ଉପରେ ବସିପଡ଼ିଲା । ଚମକିପଡ଼ି ରାଧା କାନ୍ଥ କଡ଼କୁ ଘୁଞ୍ଚିଯାଇ ମୁହଁଟିକି ଶୁଖାଇ ଦେଲା । ତାକୁ ଉରମାଡ଼ିଲା; ଧନେଶ୍ୱର ପାଖେଇ ଆସୁଛି । ଧରିବାକୁ ହାତ ବଢ଼ାଉଛି । ଅନୁରାଧା ଆଉ କଡ଼େ ଓହ୍ଲାଇ ଯାଇ ତଳେ ଠିଆ ହୋଇଗଲା । ଧନେଶ୍ୱର ପାଖକୁ ଘୁଞ୍ଚିଯାଇ ଧରିନେବାକୁ ହାତ ବଢ଼ାଇଲା । ଅନୁରାଧା ଘୃଣାରେ କହି ଉଠିଲା—ଛି, ଛୁଅନାହିଁ !

ପାଖେଇଯାଇ ହାତଟାକୁ ଧରିପକାଇ ଧନେଶ୍ୱର ପଚାରିଲା—କାହିଁକି ?

ହାତଟାକୁ ଛିଞ୍ଚାଡ଼ି ନେଇ ଅନୁ କହିଲା—ଛି, ବସ ହୋଇ ନାହିଁ । ମୋତେ ଛୁଅଁ ନାହିଁ । ପାଟି କରିବ !

ରାଗିଗଲା ଧନେଶ୍ୱର । କହିଲା—କଅଣ କହିଲୁ ? ପାଟି କରିବୁ ? କିଏ ଶୁଣିବ ? କିଏ ଆସିବ ? ଆଠଦିନେ ହେଉ କି ପନ୍ଦର ଦିନେ ହେଉ, ଛ'ମାସ ହେଉ କି ବର୍ଷକ ପରେ ହେଉ ମୁଁ ତତେ ବାହା ହେବ ବୋଲି କିଣି ଆଣିଛି । କହିବ କିଏ କଅଣ ?

କଟମଟ କରି ଚାହିଁ ରହିଲା ଅନୁରାଧା । ସତେ କି ନିଆଁ ହୁଳା ଦିଇଟା ଜଳୁଛି ତା'ର ଆଖି ଦିଇଟାରେ । କହିଲା ମୁଁ ତମକୁ ବାହା ହେବିନାହିଁ । ମତେ ଛୁଅଁ ନାହିଁ କହୁଛି । ଯିଏ ବଳାତ

ତାଠଉଁ ତମେ ଝଙ୍କା ଫେରେଇ ଆଣଯାଇ । ମୁଁ ସାନପିଲା ନୁହଁ । କେହି ମତେ ଜୋର ଜବରଦସ୍ତି କରାଇ ପାରବେ ନାହିଁ । ଅନୁରୋଧ କର କହୁଚ ମତେ ତମେ ଛୁଡ଼ଦଅ ମୁଁ ଏ କଇଦଖାନାରେ ବନ୍ଦୀ ହୋଇ ରହି ପାରବ ନାହିଁ । ତୁମେ ଆଉ ତୁମ ଭାଉଜ ଏଠି ତ ଘର ସଂସାର କର ରହିଚ । ମତେ କାହିଁକି ଆଣିଲ ?

ପାଟକୁ ଘୁଞ୍ଚ ଆସୁଚ ଧନେଶ୍ୱର । ତମତମ ହୋଇ ହାତ ମୁଠା କର ଗୋଡ଼ାଇ ଆସୁଚ । କହିଲା – କଅଣ କହିଲୁ ଅରକ୍ଷିତ ଟୋକ ? କେଡ଼େ କେଡ଼େ କଥା କହୁଚ ମ ! ଖୁଣ୍ଟିଖାଇ ଝିଅ ! ବାପା ଭିକମାଗି କୁଆଡ଼େ ବୁଲୁଚ—କେଡ଼େ କେଡ଼େ କଥାଟାମାନ କହି ଯାଉଚ ଝିଅ—ଚନ୍ଦ୍ରମା ! ମୁଁ ଜୋର କର ବାହା ହେବି । ଜୋର କର ଯାହା ମନଇଚ୍ଛା ତା କରବି । କଅଣ କରବ କିଏ ଦେଖିବା । କିଏ ତୋ ପିଠିରେ ପଡ଼ବ ଦେଖିବା ଦେଖି !

ପାଖକୁ ଯାଇ ରାଧାର ହାତ ଦଇଟାକୁ ଧର ପକାଇଲା ଧନେଶ୍ୱର । ରାଗରେ ଫଁ ଫଁ ଗର୍ଜୁଚ ସେ । ବାଘ ମୁହଁରେ ଶିକାର । ଭିଡ଼ ଆଣିଲା ଖଟ ଉପରକୁ । ଠେଲିପେଲି ଖଟ ଉପରକୁ ଗଡ଼ାଇ ଦେଲା । ପ୍ରାଣ ଵିକଳରେ ଅନୁରାଧା ପାଟି କର ଉଠିଲା—ବୋଉ ଲୋ, ମଲିଗଲି ! ଧାଇଁ ଆସ ହେ ! କିଏ ଅଛ କୁଆଡ଼େ । ମୋ ବାପ ଭାଇ କିଏ କୁଆଡ଼େ— ।

ଆଉ ପାଟି କରପାରିଲା ନାହିଁ ଅନୁରାଧା; ପାଟିରେ ତାର କାନ ଗୁଞ୍ଜିଦେଲା ଧନେଶ୍ୱର । ଦୁଆର ମୁହଁକୁ ଆସି ଠିଆ ହୋଇଗଲା ହାରାମଣି । ଡାକଦେଲା—କଅଣ ହୋଇଚ କଲେ

ନାଲଜ ! କାହିଁକି ଏତେ ପାଟି କରି ଉଠୁଚୁ । ବାଇ ବାତୁଳ ହୋଇଗଲୁ ନା କଅଣ ?

ପ୍ରାଣ ଚକଳରେ ଅନୁରାଧା ଆପଣାର ହାତ ଦୁଇଟାକୁ ମୁକ୍ତ କରିନେଇ ଅସଜ୍ଜିତ ଲୁଗାପଟାକୁ ଯତ୍ନକରିଅତ ସଜାଡ଼ି ନେଇ ଖଟର ଆରକଡ଼କୁ ଡେଇଁପଡ଼ିଲା । ଶିକାର ପଳାଇବାକୁ ଚେଷ୍ଟା କରୁଚି, ମାତ୍ର ବାଘ ଛାଡ଼ୁଚି କେତେବେଳେ ? ବୁଲିଗଲା ଆରକଡ଼କୁ । ଅନୁରାଧା ତ୍ରାହି ତ୍ରାହି କରି ମୁଣ୍ଡଟାକୁ ତଳେ ପିଟିଦେଇ ପାଟିକରି ଉଠିଲା— "ମତେ ରକ୍ଷା କର କହୁଚି । ତମେ ରାକ୍ଷସ । ମୁଁ ପାରିବି ନାହିଁ । ମରିଯିବି । ବିଷ ଜହର ଖାଇଦେବି । ମତେ ଛୁଅଁ ନାହିଁ କହୁଚି ! ମୁଁ ତମକୁ କଦାପି ବାଧା ଦେବିନାହିଁ । ମତେ କେହି ଜବରନ୍ କରିପାରିବ ନାହିଁ । ମୁଁ ତମ ଘରେ ରହିବି ନାହିଁ । ମତେ ଛାଡ଼ି ଦିଅ କହୁଚି । ତମ ଗୋଡ଼ତଳେ ପଡ଼ୁଚି, ମତେ ମୁକ୍ତିଦିଅ" !

କେତେ ପାଟିରେ ଅନୁରାଧା ଡାକ ପକାଉଚି । ତଥାପି କେହି ଆସୁନାହାନ୍ତି । ସାଇପାକ ଯେତିକାଘରେ ସେ ସମସ୍ତେ ଶୁଣୁଚନ୍ତି । ଧନେଶ୍ୱର ପ୍ରଚଣ୍ଡ ରାଗିଯାଇଚି । ଖଟ ଚାରିପଟେ ଘୁରିଘୁରି ଏପଟ ସେପଟ ଗୋଡ଼ାଉଚି । ଅନୁରାଧା ପଳାଇ ପଳାଇ ଶେଷକୁ ନିସ୍ତେଜ ହୋଇ ଖଟ ତଳକୁ ଗଳିଗଲା । ଡାକିଲା—"ହେ ଭଗବାନ ମତେ ରକ୍ଷା କର" !

ହାବ୍ରମଣି ଘର ଭିତରକୁ ପଶିଆସି ଧନେଶ୍ୱର ହାତଧରି ଟାଣିଲା—"ଆସ କହୁଚି । ଥାଉ ଆଜି—ପରେ ମୁଁ ତାକୁ ମଙ୍ଗେଇ ନେବି । ତମ ଘରକୁ ଆସିଚି । ଯିବ କୁଆଡ଼େ" ?

ହାବ୍ରମଣି ଭିଡ଼ୁଚି ବାହାରକୁ ! ଧନେଶ୍ୱର ଭିଡ଼ିହେଉଚି ଖଟ ତଳକୁ । ଗୋଟାଏ ଠେଙ୍ଗା ଆଡ଼କୁ ସେ ହାତ ବଢ଼ାଉଚି ।

ମନେ ମନେ ସ୍ଥିର କରି ନେଲାଣି ଦି' ଚାରି କେଞ୍ଚା ବସେଇଦେବ ସେ ଝିଅର ହାତ ଗୋଡ଼ ଭାଙ୍ଗିଯିବ । ଟିକିଏ ଫାଙ୍କ ଦେଖି ଅନୁରାଧା ଧୀରେ ଖସି ବାହାରକୁ ପଳାଇ ଗଲା, ପଳାଇଯିବ ବୋଲି । କିନ୍ତୁ ହାୟ ! ଦାଣ୍ଡଆଡ଼ ବାରିଆଡ଼ ଦୁଆଡ଼ କବାଟରେ ତାଲା ପଡ଼ିଯାଇଛି । ଦିଅର ଭାଉଜ ଦୁହେଁଯାକ ଫୁସୁଲା ଫୁସୁଲି ହୋଇ ଆଜି ଏ କଥା କରିବାକୁ ବସିଛନ୍ତି । ଶେଷକୁ ରାଧା ଗୋଟାଏ ଖୋଲା ଘର ଭିତରକୁ ପଶିଯାଇ ଭିତରୁ କବାଟରେ ଶିକୁଳି ଲଗାଇ ଦେଲା । ଗ୍ରେଟ ଜାଲାବାଟେ ଚାହିଁ ଦେଖିଲା ଦିଅର ଭାଉଜ ଦୁହେଁ ଭିଡ଼ା ଓଟରି ହୋଇ ସେଇ ଘର ଦୁଆର ମୁହଁରେ ଆସି ଠିଆ-ହେଲେ । ଧନେଶ୍ୱର ଜୋରରେ ଦି' ଚାରି ଗୋଇଠା ମାଇଲା ସେ କବାଟକୁ—ଭାଙ୍ଗିଦେବ ବୋଲି । ମାତ୍ର ଭାଙ୍ଗିଲା ନାହିଁ । ଶେଷକୁ ଲଙ୍ଗଳାମୁକୁଳା ଅବସ୍ଥାରେ ଦିଅରକୁ ଭାଉଜ କୁଣ୍ଢାଇ ନିଜ ଘର ଆଡ଼କୁ ଭିଡ଼ିନେଲା । କହିଲା—"ଏମିତି ହେଲେ ଚଢ଼େଇ ପୋଷା ମାନିବ ନାହିଁ କହୁଛି । ବଶ ନ ହେଉଣୁ ମାରଧର, ଜୋର ଜବରଦସ୍ତି କାହିଁକି ? ଥୟ ଧର, ଅପେକ୍ଷା କର । କହୁଛି ମୁଁ ତାକୁ ମତାଇ ମଙ୍ଗାଇଦେବି" ।

"ହଉ ତମରି କଥା ରହିଲା" ।

"କହୁଛି—ତମେ ମୋ କଥା ମାନ, ମାରଧର କରନାହିଁ । ଜୋର ଜବରଦସ୍ତି କର ନାହିଁ" ।

"ହଉ ତମରି କଥା ରହିଲା" ।

ଘରଟି ଭିତରେ ପଶି ଅନୁରାଧା ଗୋଟିପଣେ ଥରୁଛି । ବାଟ ଖୋଜି ହେଉଛି, ପଳାଇଯିବ ବୋଲି । ଖୋଜି ହେଉଛି ବିଷ, ଜହର କିଛି ପାଇଲେ ଖାଇଦେବ ବୋଲି । ମନେ ମନେ ପ୍ରତିଜ୍ଞା

କରିବସିଲା ଯେମିତି ହେଉ ସେ ଏ ଘରୁ ପଳାଇଯିବ, ନୋହିଲେ ଆତ୍ମହତ୍ୟା କରିବ । ଏ ଚଣ୍ଡାଳ ହାତରେ ଜୀବନ ସମର୍ପି ଦେଇ-ପାରିବ ନାହିଁ ସେ ।

ଠିଆ ହୋଇଥିଲା, ବସିପଡ଼ିଲା । ଭାବିଲା, ଭାବିହେଲା—କଅଣ କରିବ ? କିଛି ସମୟ ପରେ ଶୁଣିଲା—ଆରଘରେ ହୀରାମଣି ଆଜି ଧନେଶ୍ୱର ହସି ଉଠିଲେଣି । ହସ ଖୁସିରେ କମ୍ପି ଉଠିଲାଣି ସେ ଘରଟା । ଅନୁରାଧା ମନ ଭିତରେ ଆଶ୍ୱାସନା ପାଇଲା । ଯାହାହେଉ ରୋକଲା ରାକ୍ଷସ ଖାଦ୍ୟ ପାଇ ଆପାତତଃ ତୁଷ୍ଟ ହୋଇଗଲାଣି । ହୀରାମଣି ଉଦ୍ଦେଶ୍ୟରେ ସେ ଭୂଇଁରେ ଦଣ୍ଡବତ ହୋଇ ଧୀରେ କହିଉଠିଲା—"ଯାହା ହୁଅ ତମେ ହୀରାମଣି, ମୋର କିଛି କ୍ଷତି ନାହିଁ । ତୁମେ ମତେ ବଞ୍ଚାଅ । ମୁଁ ତୁମରି ଶରଣ ପଶୁଚି" ।

କାନ୍ଥ ଡେଇଁ ହୀରାମଣି ଭିତରକୁ ଓହ୍ଲାଇ ଆସିଲା । ନଗ୍ନଆଁରେ କାକୁସ୍ତ ହୋଇ ଅନୁ ତା ଗୋଡ଼ ଦିଇଟାକୁ ଜାବୁଡ଼ି ଧରି ଅନୁନୟ ସ୍ୱରରେ କହିଲା—"ତୁମେ ମୋର ବଡ଼ ଭଉଣୀ, ତୁମେ ମୋର ମାଆ, ମୁଁ ତମର ଝିଅ । ମତେ ରକ୍ଷା କର । ଜବାବ ଦେଲେ ଏ ଗୋଡ଼ ଦିଇଟା ଛାଡ଼ିବି, ନୋହିଲେ ନାହିଁ । ତମେ ଏ ରାକ୍ଷସ ପୁରୀରେ ରକ୍ଷା କରିପାରିବ" ।

ହୀରାମଣିର ମନ ତରଳି ଗଲା । ପଚାରିଲା—"କଅଣ କହୁଚୁ ? ଉଠୁ । ମୁଁ ଜବାବ ଦେଲି, ତୋର କିଛି କ୍ଷତି ହେବ ନାହିଁ" ।

ଧୀରେ ଉଠି ବସି ଅନୁରାଧା ହୀରାମଣିର ହାତ ଦିଟାକୁ ଧରିପକାଇ କହିଲା—କୁହ, ମତେ ସେ ଛୁଇଁବେ ନାହିଁ । ମୁଁ ତମ ଘରେ ଖାଉଚି, ପିଉଚି—ସବୁ ଗୋହରଣା ଗଢିବି । ମତେ

ବନ୍ଦୀ କରି ରଖନାହିଁ । ମୋ ଉପରେ ଜବରଦସ୍ତି କରନାହିଁ । ସେ କହୁଚନ୍ତି, କିଣି ଆଣିଚନ୍ତି ବୋଲି, ମୁଁ ଦାସୀ କାମ କରିବାକୁ ରାଜି, କିନ୍ତୁ—

ଅଧା ବାକି ପୂର୍ଣ୍ଣ କରିଦେଲି ହୀରାମଣି—"କହୁଚୁ ସେ ତତେ ଛୁଇଁବେ ନାଇଁ, ଏଇ ତ" ?

"ହଁ ନାନୀ ! ସେଇଆ" ।

ଛଳଛଳ ଆଖିରେ ଅନୁରାଧା ଚାହିଁ ରହିଚି ହୀରାମଣି ଆଡ଼କୁ ।

"ସେଇଆ ମୁଁ କହୁଚି ନାନୀ ! ତମ ଗୋଡ଼ ଧରି ସେତିକି ପ୍ରାର୍ଥନା କରୁଚି" ।

"ମୁଁ ତତେ ନିର୍ଭର ଜବାବ ଦେଲି ଅନୁ । ବାହାଘର ନ ହେବାଯାକେ ତତେ ସେ ଛୁଇଁବେ ନାହିଁ" ।

ହୀରାମଣି ଜବାବରେ ଜବାବ୍ । ସେ ଏ ଘରର କର୍ତ୍ତ୍ରୀ । ଧନେଶ୍ୱର ଏକରକମ ତାଆରି କଥାରେ ପରିଚାଳିତ । ତେବେ ଅନୁରାଧାଟିକୁ ଆଣିବାର ଅଭିପ୍ରାୟ କଅଣ ?

ସାନ ଛୁଆଟିକି ଶିଖେଇ ଦିଆଯାଇଚି ଅନୁକୁ ବୋଉ ବୋଲି ଡାକିବାକୁ—'ସାନବୋଉ' । ଅନୁରାଧା ସବୁ କଥା ଅନୁମାନ କରି ନେଇଚି, ଅନୁମାନ ଉପରେ ସାନ ଛୁଆଠଉଁ କୌଶଳରେ ପେଚ୍ରି କରି କଥାଟାକୁ ଆଦାୟ କରି ନେଇପାରିଚି । ତା ବୋଉ ଥିଲି । ହୀରାମଣି ତାର ଦେଢେଇ । ସମସ୍ତେ କହିଲାରୁ ତାକୁ 'ବୋଉ' ବୋଲି ଡାକୁଚି । ବୋଉ ତାର ମଲି । ସେ ଦେଖିଚି । ବନ୍ଦୀ ଶାଳାରେ ନିଖିଳ ପିଲାଟି କେବଳ ବେଳେ ବେଳେ ଅନୁର ମନ ପରିବର୍ତ୍ତନ କରାଇ ପାରୁଚି । ରାତିରେ ଗୁଡ଼ି ଆସି ପାଖରେ ଶୁଏ ।

ଏଣିକି ସେ ଆର କଡ଼କୁ ଶୋଉଛି । ତକ୍ତପୋଷ ଉପରେ ଅନୁ ଶୋଉଛି ଛୁଆଟିକି ନେଇ । ଝିଡ଼କି ପାଖକୁ ଶୋଇ ସେ ଅନେକ ବେଳ ଯାଏ ବାହାରର ମୁକ୍ତ ଆକାଶ ଆଡ଼କୁ ଅନାଇ ରହୁଛି । ନିଦ ହେଉନାହିଁ, କେବଳ ଭାବି ହେଉଛି । କଅଣ ଥିଲି, କଅଣ ହେଲି ? ନାନା କଥା ବାରମ୍ବାର ମନେ ପଡ଼ୁଛି । ବରଂ ବଡ଼ ଦାଣ୍ଡରେ ଭିକ ମାଗି ବୁଲୁଥାଆନ୍ତା । କାହିଁକି ନାନା ଏ କଥା କଲେ ! ବାପା କୁଆଡ଼େ ଗଲେ ?

ମଣିଷ ଭାବୁଛି ମୁଁ ସବୁ କରୁଛି । କିନ୍ତୁ କୁଟା ଖଣ୍ଡିକ ଦୁଖଣ୍ଡ କରିବାର ତାର ଶକ୍ତି ନାହିଁ ।

'କର କରାଉଥାଇ ମୁହିଁ,
ମୋ ବିନୁ ଅନ୍ୟ ଗତି ନାହିଁ ।

ଯମପୁରର ସୁଅ କୁଆଡ଼େ କାହାକୁ ଭସାଇ ନେଇ କେଉଁ ଆବର୍ତ୍ତରେ ପକାଇ ଦେଉଛି କେତେବେଳେ, ତାର କିଛି ଠିକଣା ନାହିଁ । ବାପା କୁଆଡ଼େ ଗଲେ ଭାବିଲା ବେଳକୁ କାନ୍ଦ ମାଡ଼ୁଛି । ଆଉ କିଛି ଭାବି ହେଉନାହିଁ । ଅନ୍ଧକାର ଭିତରେ ଭବିଷ୍ୟତ ବୁଡ଼ି ଯାଉଛି । କେବଳ ଭୟ ଲାଗୁଛି ଏବଂ ବିକଳ ମାଡ଼ୁଛି—ରାକ୍ଷସ-ପୁରରେ ଭଗବାନ ଆଣି ଛାଡ଼ିଛନ୍ତି । ଜୀବନ୍ତ ମାଂସ ଚାଖିବାକୁ ଏ ରାକ୍ଷସ ଚାହେଁ । ତାର ତୃପ୍ତି ନାହିଁ, ଶାନ୍ତି ନାହିଁ । ଧନ ଅଛି, ଯାହା ମନେ କରିବ ତା କରିଦେବ । ଏଠି ତାକୁ ସମସ୍ତେ ଘୃଣା କରନ୍ତି ଏବଂ ଭୟ କରନ୍ତି ।

ନିଦ ହେଉନାହିଁ ଅନୁରାଧାକୁ । ସେ କେବଳ ଭାବି ହେଉଛି— କଅଣ କରିବ ? କେମିତି ଏଠୁ ମୁକ୍ତି ପାଇବ ?

ପାଖ ଘରକୁ ଗ୍ଲାଡ଼ ଆରଘରେ ଅନ୍ଧାରଆ କମିନ୍ଟିରେ ଭୁଷ୍ଟୁ ଭୁଷ୍ଟୁ ଆଲୋଚନା ଚାଲିଚି । ଢ଼’ଙ୍କଣିଆ କମିଟି । ହୀରାମଣି ଆଉ ଧନେଶ୍ୱର ।

“କହୁଚ ତୁମେ ଏମିତି ବକଳ ହୁଅନାହିଁ । ଘରେ ଆଣି ଥୋଇଚ ତ ଚନ୍ତା କଅଣ” ?

“ବକଳ ନୁହେଁ ଯେ କଦ । କଣି ଆଣିଚ ମୋର ମଣିଷ । ମୋର ଅଧିକାର । ବାଧା କାହିଁକି ଦଉଚ । ମନା କାହିଁକି କରୁଚ”?

“ତମର ମଣିଷ ? ଅନୁରାଧା ନା ମୁଁ” ?

ଅଭିମାନଭରା କଣ୍ଠରେ ହୀରା ମଣି କହୁଥାଇ ଦୀର୍ଘନିଃଶ୍ୱାସ ଛାଡୁଚ ।

“ତୁମେ ? ପହିଲ୍ ନମ୍ବର । ଆଉ ସେ ଦନମ୍ବର” ।
“କେତେ ନମ୍ବର ଯାକେ ଏମିତି ଚାଲିବ” ?
“ଯେତେ ନମ୍ବର ଯାକେ ଭଗବାନ ଯୁଟାଇବେ” ।

“ହଉ ଯାହା ତମ ଇଚ୍ଛା; କିନ୍ତୁ ମୁଁ ତମକୁ ବାରଣ କରିଦେଉଚ, ତା କତିକି ଏଇକ୍ଷଣି ହାତ ବଢ଼ାଇବ ନାହିଁ । କଥାଟା ଏକଦମ ଛଟିଉ଼ ଯିବ । ତାକୁ ମୁଁ ବୁଝାସୁଝା କରି ନର୍ଭର ଜବାବ ଦେଇଚ । ତୁମେ ଅଧୁଧର, ମୁଁ ତାକୁ ବାଗେଇ ନେବ । ନୋହିଲେ ସେ ଯେବେ ଭଲ ମନ୍ଦ କରିବସେ” ?

“ଭଲ ମନ୍ଦ ? ଗୋଟାଏତ କରିଚ । ଆଉ ଗୋଟାଏ କଲେ କରିବ, ଆଉ ଅଧିକା କଅଣ ହେବ” ?

ହୀରାମଣି ଦୀର୍ଘଶ୍ୱାସ ଟାଣିଲା । ଧନେଶ୍ୱରର ଅତ୍ୟାଚାର ସହି ନପାରି ସ୍ତ୍ରୀ ତାର ଆତ୍ମହତ୍ୟା କରିଛି ।

ହୀରାମଣି କହିଲା—"ସେଗୁଡ଼ାକ ଭାରି ଖରାପ କଥା । ବଡ଼ ବିପଦ । ମୁଁ ତ କହୁଛି କଥାଟା ସୂକ୍ଷ୍ମରେ ଛାଡ଼ିବା । କଚୁଆଁ କୁରାଡ଼ି ଦରକାର ନାହିଁ" ।

"ହଉ, ହେଲା ଏବେ ତମର କଥା । କହୁଥିଲ ପାଉ" ।

ତାହିଁ ଆରଦିନ କଅଁଳ ଗାଧୁଆ ବେଳକୁ ହୀରାମଣି ଧୀରେ ଆସି ଡାକିଲା—"ଆ ରାଧି, ଗାଧୋଇ ଯିବୁ" ?

"କୁଆଡ଼େ" ?

"ନଈକି" ।

ଢଳ ଢଳ କରି ହୀରାମଣି ମୁହଁଆଡ଼କୁ ରାଧା ଅନାଇ ରହି ଭାବିଲା—ସତେ ? ଏ ରାଜ୍ୟରେ ପୁଣି ନଈ, ପୋଖରୀ ଅଛି ? କଇଦ ଆସାମୀ ସେଠିକି ପୁଣି ଗାଧୋଇ ଯାଇପାରନ୍ତି ? କାହିଁ ଆଜଯାକେ ତ ଏଇ ଘର, ଏଇ ବାଡ଼, ଏଇ କୂଅ, ଏଇ ଅଗଣା ହୋଇ ହୋଇ ରାଧା ଏକଦମ୍ ଅଣନିଶ୍ୱାସୀ ହୋଇଗଲାଣି !

"ଆ ଯିବୁ । ମାଲପା ଲଗା" ।

ହୀରାମଣି ହାତ ଧରି ଟାଣିଲା । ରାଧି ଉଠିଗଲା । ବାଡ଼ବାଟେ ଗହୀର ବିଲ କିଛି ପାରି ହେଲେ ଅଣଓସାରି ନଈଟି । ଟାଣ ସୁଅ ଚାଲିଛି । ନିର୍ମଳ ପାଣି—କାଚଧାରି ପରି । ଗୁରିଆଡ଼େ ଗଛଲତା ହସୁଚନ୍ତି । ବିଲରେ ଗୋରୁ ଗାଈ ଚରୁଚନ୍ତି । ମୁକ୍ତ ଆକାଶ ତଳେ ମୁକ୍ତ ବିହଙ୍ଗ । ପଠାରେ କାଶଫୁଲ ଝଟକୁଛି । ଗାଧୁଆ ତୁଠରେ ସାଇର ମାଇପେ ସମସ୍ତେ ଇଆରିଆଡ଼କୁ ଅନାଉଚନ୍ତି । ଏକୁ

ଲକ୍ଷ୍ୟକରି "ଆହା ଚୁଚୁ" କରୁଚନ୍ତି । ଭାରି ବିକଳ ଲାଗୁଚି । ମନ-ହେଉଚି ଗହୀଡ଼ିଆ ପାଣିଭିତରକୁ ଡେଇଁପଡ଼ି ବୁଡ଼ିମରିବ । ସେ ମରଣରେ ବରଂ ଆନନ୍ଦ ଅଛି, ଶାନ୍ତି ସନ୍ତୋଷ ଅଛି । କିନ୍ତୁ ଏ ଜୀବନରେ ସେ ସବୁ ଆଶା କରିବା ବୃଥା ।

ହୀରାମଣି ଜଗିଛି । ଗୋଡ଼େ ଗୋଡ଼େ ଖଣ୍ଡାପହରା । ତେବେବି ହୀରାମଣିର ମନ ଅନୁରାଧାର ଉପସ୍ଥିତି ବାଞ୍ଛା କରୁନାହିଁ । ରାଧାକୁ ଦେଖିଲେ ଦୁଃଖଲାଗୁଚି, ଆହା କରିବାକୁ ମନ ହେଉଚି । କିନ୍ତୁ ମନର କେଉଁ ନରମ ଅଂଶରେ ତାର ଚିନ୍ତା ମୁନିଆ କଣ୍ଟା ପରି ଫୋଡ଼ି ହୋଇ ଯାଉଚି । ସେ ବର୍ତ୍ତମାନ ଏ ଘରର ସର୍ବେ ସର୍ବା । କିନ୍ତୁ ବିବାହପରେ ଅନୁ ହେବ ମାଲିକ, ସେ ହେବ ଚାକରାଣୀ । କାହୁଁ କିଏ ଗୋଟାଏ ଆସି ପଶିଥିଲା ପରି ସେ ଚଳିବ ! ଭାବିଲା ବେଳକୁ ମନଟା ଘାଣ୍ଟି ଚକଟି ହୋଇ ଯାଉଚି । ନିରଙ୍କୁଶ ଆଧିପତ୍ୟରେ ତାର ପୂର୍ଣ୍ଣବାଧା ସୃଷ୍ଟି କରିବାକୁ ଆସିଚି ରାଧା ।

ଫେରି ସେ ଭାବିଲା—ରାଧା ତ ମନକୁ ଆସିନାହିଁ । ସେ ତ ଏ ଘରେ ରହିବାକୁ ଚାହେଁନା । କିନ୍ତୁ ଯିବ କେମିତି ? ଯିବାର ବାଟ କଲେ ସେ ଯିବ । ଏ ବାଟଟି କରିବ କିଏ ? ଧନେଶ୍ୱର କେବେହେଁ ନୁହଁ । ଉପାୟ କଲେ କରିବ ମୁହିଁ—

"ମୂକ୍ତ ମାଇଲେ ଯିବ ସରି,
ଦେବଙ୍କ ସଙ୍ଗେ କିପାଁ କଳି" ?

ଅନୁରାଧା ତ ପଳାଇଯିବାକୁ ବ୍ୟାକୁଳ । ଉପାୟଟା ଖୋଜି ଦେଇ ପାରିଲେ ହେଲା । ତେଣିକି ଧନେଶ୍ୱର—ବସିବାକୁ କହିଲେ ବସିବ, ଉଠିବାକୁ କହିଲେ ଉଠିବ ।

ଭଅଁରଟା ଗତରାତିରେ କଇଁ ଫୁଲ ଉପରେ ବସିଥିଲା । ତା ହାତପାକ କଇଁ — ରେଣୁ ଲଗିଛି । ସକାଳ ହେଲା । ପଦ୍ମ ଫୁଟି ଉଠି ହସିଲା । ଭଅଁରଟା ଉଡ଼ି ଉଡ଼ି ଆସି ତା ଉପରେ ବସିବାକୁ ଚେଷ୍ଟା କରୁଛି । ଧୀରେ ପବନରେ ପଦ୍ମ ଦୋହଲୁଛି । କଣ କହୁଛନ୍ତି ପଦ୍ମ ଭଅଁରକୁ ବସାଇ ଦେଉନାହିଁ । ପରମୁଖାପେକ୍ଷୀ ଭଅଁରକୁ ସେ ଛୁଆଁ ଦେବାକୁ ଚାହେଁନା । ମାନଅଭିମାନ ଜାଣିଲେ ପାଦ ଅନ୍ୟ ସଙ୍ଗରେ ଥିବା କଥାଟାକୁ ସହିପାରେ ନାହିଁ ।

ଅନୁରାଧାତ କହୁନାହାଁ ଧନେଶ୍ୱର ମୋର ହେଉବୋଲି ! ହୀରାମଣି ଚାହୁଁ ନାହିଁ ଧନେଶ୍ୱର ଅନୁକୁ ବାଲି ହେଉ ବୋଲି । ଏଇ ଦ୍ୱିଧା ଭିତରେ ଦୋହଲୁଛି ହୀରାମଣି । ଆଜ ସେ ରାଣୀ ଅଛି, କାଲିକ ବାଟର ବାଉରାଣୀ ପାଲଟି ଯିବ, କଏ ଚାହେଁ ଏକଥା ?

ବାଟରେ ଅନୁର ହାତ ଧରିପକାଇ ଲୁଚି ଲୁଚି ପଚାରିଦେଲା— ସତ କହୁଛୁ ରାଧା, ତୁ ଏ ଘରେ ରହିବାକୁ ଚାହୁଁନା ?

"ସତ କହୁଛି ନାନି ! ମତେ ଛାଡ଼ିଦିଅ, ମୁଁ କୁଆଡ଼େ ପଳାଏଁ । ଏ ଘର ମତେ ଯମପୁରୀ ପରି ଲାଗୁଛି" ।

ହାତକୁ ଧରିପକାଇଲା ରାଧା । କହିଉଠିଲା — ତମ ହାତ ଧରୁଛି ନାନି, ତମ ଗୋଡ଼ତଳେ ପଡ଼ୁଛି, କିଛି ଗୋଟାଏ ଉପାୟ କର ।

"କୁଆଡ଼କି ଯିବୁ ? ନାନୀ ପାଖକୁ" ?

"ବାପା ପାଖକୁ । ନହେଲେ ନାନୀ ପାଖକୁ ଚାଲିଯିବି" ।

"ଯିବା କଅଣ ସହଜ ଭଉଣି ? ସାଙ୍ଗରେ ଯିବ କିଏ" ?

"ସାଙ୍ଗରେ କେହି ଯିବା ଦରକାର ନାହିଁ । ଏକା ପଳାଇବି" ।

"ପଇସା" ?

"ଦରକାର ନାହିଁ । ମାଗି ଯାଚି ଚାଲିଯିବି" ?

"ତୁ ଜାଣୁନାହୁଁ ମା ! ଏକୁଟିଆ ଗରିବ ଝିଅପିଲା, ବାଟରେ ଚାଲିଗଲେ ଛଅ ପିଏ ଥଟ୍ଟା କରିବେ, ଭିଡ଼ ନେବେ, ଅତ୍ୟାଚାର କରିବେ । ଦୁନିଆଁ ଟାରେ ମାଂସଲୋଭୀ ଲୋକଗୁଡ଼ାକ ଗଧିଆପରି ଟାକି ବସିଚନ୍ତି । ସମସ୍ତଙ୍କ ଭିତରେ ପଶୁ ଅଛି, ରାକ୍ଷସ ଲୁଚିଚି" ।

ହୀରାମଣି କିଛି ପାଠ ବି ପଢ଼ିଚି । ସେ ସଂସାରଟାକୁ ଚିହ୍ନେ, ଜାଣେ, ଲୋକ-ଚରିତ୍ର ତା ପାଖରେ ଅଳ୍ପେ ବହୁତେ ଜଣା ଅଛି । ସେ ଦୀର୍ଘ ନିଃଶ୍ୱାସ ଛାଡ଼ି ଚାଲିବାକୁ ଆରମ୍ଭ କଲା । କହିଲା—"ଆଚ୍ଛା ହଉ ଦେଖିବା । କିଛି ଗୋଟାଏ ଉପାୟ କରିବା" ।

ଅନୁନୟ ସ୍ୱରରେ ରାଧା କହିଲା—"ବାପା କୋଉଠି ଅଛନ୍ତି ତାଙ୍କର ପାଖକୁ ମତେ ପଠାଇ ଦିଅ" ।

"ହଉ ଦେଖିବା" ।

ନରମା ଖୁଡ଼ି ଓ ଧନେଶ୍ୱର ଭିତରେ ଫୁସୁରୁ ଫୁସୁରୁ ଚାଲିଚି । ଧମା କହୁଚି—ଖୁଡ଼ି ! ତତେ ଲାଗିଲା । ଗ୍ରାହକ ମନ ମାରି ଚାଲୁଚି । ଭଲ କଥା କହୁନାହିଁ । ମନ ଭିତରେ ତାର ନିଆଁ ଧରିଚି । କେତେବେଳେ ସେ ଗରହୁସିଆଖି ଦୋଇଯିବଟି ! ଅନୁଟା ରହିବାକୁ ମଙ୍ଗୁନାହିଁ । କାହିଁ କୁଆଡ଼େ ପଳେଇପାଲେଇ ଯିବ ତ କଥା ସରିଲା । ମୋର ଏତେ ଚେଷ୍ଟା, ଏତେଗୁଡ଼ାଏ ଟଙ୍କା ପାଣିରେ ପଡ଼ିଯିବ ।

ଧୀରେ ଧୀରେ ଖୁଡ଼ି ହସୁଚି । ସେ ଜାଣୁଚି ହୀରାମଣିର ମନକଥା । ସେ ବି ଜାଣିପାରୁଚି ଅନୁର ମନ ଓ ଧନେଶ୍ୱରର ମନ । କିଛି କହୁନାହିଁ । ଖାଲି ଟିକେ ଟିକେ ହସୁଚି ।

"ହସିଆର ଥିବୁ ଖୁଡ଼ । ତୋ'ଛଡ଼ା ଏଠି ତ ମୋର ସମସ୍ତେ ଶତ୍ରୁ" ।

ଖୁଡ଼ ଭରସା ଦେଲେ । କହିଲେ—ତୁନି ହଉନଉଁ, କଏ କଅଣ ତୋର କରିପକାଇବେ ? ମୁଁ କଅଣ ଲୋକଙ୍କ କଥା ଶୁଣୁନାହିଁ । କୁକୁରପରି ଭୂକୁଥିବେ । ତୋ କାମ ତୁ ବଢ଼ାଇବୁ । ଖାଲି ବାପୁ ଅବଧାନ ନା ଅତୁଆ ପୁରେଇଲା । ନୋହିଲେ କୋଉ କାଳୁ କାମ ଛୁଟିଲାଣି ।

ହସିହସି ଅଗଣା ଭିତରକୁ ଓଦାଲୁଗାରେ ପଶିଆସୁଛି ହାରାମଣି । ହସିହସି ଠଉରାଇ ନେଉଚି ଖୁଡ଼ ପୁତୁରାଙ୍କ ମନକଥା । ପଚାରିଦେଲା— "କଅଣ କି" ?

ଧୀରେ ଉତ୍ତରଦେଲା ଖୁଡ଼—"କିଛିନାହିଁ । ତୋର ଶୁଣିବାର କିଛି ନାହିଁ" ।

ପଛେପଛେ ଅନୁରାଧା ଆସୁଚି । ଟିକେ ତାର ସାହସ ବଢ଼ିଯାଇଚି । ମୁକ୍ତ ଆକାଶ ତଳେ ଥରେ ବୁଲିଆସିଲେ ମନଟା ବଦଳି ଯାଏ । ପୁଣି ଭରସା ପାଇଯାଇଚି ଏ ଘରର ପ୍ରକୃତ ମାଲିକ ଠାରୁ ।

ବାଡ଼ ବଗିଚା ମିଶି ଦୁଇ ଏକର ଜମି । ରାସ୍ତାକଡ଼କୁ ଲାଗି ଖଳାବାଡ଼ । ଖଳାବାଡ଼ ଟପିଲେ ବାଗନା । କଦଳୀ, ପଣସ, ଆମ୍ବ, ଜାମୁ କେତେ ଜାତିପୁ ଗଛ । ବାଗନା ଟପିଲେ ଘରଗୁଡ଼ିକ । ଅଗଣାଟିଏ, ଓ ଖଞ୍ଜା ପଛକୁ କିଛି ଅଂଶ ପଡ଼ିଆ ବାଡ଼ । ତେଣିକି ବାଡ଼ ଡେଇଁଲେ ଗହୀର ବିଲ । ବିଲ ସେପଟେ ଝୁଙ୍କଳା ନଇଟା ।

ଦେଖିବାକୁ ଯେମିତ ସୁନ୍ଦର, ବର୍ଷାଦିନେ ସେମିତ ଭୟଙ୍କର । ଗାଧୁଆତୁଠ ଠଉଁ ଅଳ୍ପ ଦୂରରେ ଭଙ୍ଗାଘାଟ । ଘାଟ ପାଖକୁ କନଅର ବଣ । ବଣ ଭିତରେ ଗାଁ ମହାଦେବ ସୁକର୍ଣ୍ଣେଶ୍ୱରଙ୍କ ଶ୍ଲେଟ ମନ୍ଦର ଓ ବେଢ଼ା । ବେଢା ବାହାରେ ମଣ୍ଡପ । ଗୃହଆଡ଼େ ଆଖି ବୁଲାଇ ଆଣି ଅନୁରାଧା ମନ ଫେରାଇଚ । ଦୁଃଖଭିତରେ କାଞ୍ଚିତ ଶାନ୍ତି ସନ୍ତୋଷ ସେ ପାଇପାରଚ । ଆଜ ତା ପ୍ରାଣ ଟିକେ ଆଶ୍ୱସିତ ।

ଦୁଇଟି ଦିନ ପରେ ଖରାବେଳେ ଖଳାବାଡ଼ରେ ବେଙ୍ଗଲା ପଡ଼ୁଚ । ଟୁଙ୍ଗି ଘରେ ଧନେଶ୍ୱର ବସିବସି କଣେ କାହା ସାଥିରେ ଖୁସିଗପ ହେଉଚ । ଲୋକଟି ଆସିଚ କଣ୍ଟୁ କରଜ ନେବା ଆଶାରେ । ବାଡ଼ପଟେ ରାସ୍ତାକଡ଼କୁ ଜଅଁଆଜଅଁଆ ବାଉଁଶ ଫାଟକ ଲଗିଚ । ଫାଟକ ଖୋଲ ଧୀରେ ଧୀରେ କିଏ କଣେ ଭିତରକୁ ପଶିଲା । ହାଡ଼ ଗିଳିଗିଳି ଦିହହାତ, ଖୋଳାଖୋଳା ଆଖି, ଟଳଟଳ ଭିତରଆଡ଼କୁ ଆସି ଟୁଙ୍ଗି ଘର ଦୁଆର ମୁହଁରେ ଥକ୍‌କାହୋଇ ଠିଆ ହୋଇଗଲା ।

ଭିତରୁ ଶୁଭିଲା—"କିଏ ? ଭିକ ଏଠି ମିଳେନାହିଁ । ଯାଆ, ଫାଟକ ଭିତରକୁ ପଶିଆସିବାକୁ କିଏ କହିଲା" ?

କଣେ ଭିକାରି ବ୍ରାହ୍ମଣ । ଠିଆହେବା ଥାନରେ ଥରଥର ହୋଇ ଅରୁଚ । ହାତରେ ଖଣ୍ଡେ ବାଉଂଶବାଡ଼ । ପାଟି ଥରୁଚ । ପଚାରିଲା — "ଧନେଶ୍ୱର ଦାଶଙ୍କ ଘର ଇଏ" ?

ବାହାରକୁ ଆସି ଧନେଶ୍ୱର ଲୋକଟାର ଆପାଦମସ୍ତକ କଟମଟକର ଅନାଇଗଲେ । ପଚାରିଲେ—"କାହିଁକି" ?

"ମୋ ନା ଦ୍ରବ୍ୟସିଂହ ରାଜଗୁରୁ" ।

"କୋଉ ରାଜଗୁରୁ" ?

"ଦ୍ରବ୍ୟସିଂହ ରାଜଗୁରୁ । ଘର ହଳଧାବସନ୍ତ । ମୁଁ ଆସିଚି ମୋ ଝିଅକୁ ଦେଖିବାପାଇଁ" ।

"ତମ ଝିଅ ? କିଏ" ?

"ରାଧା, ମୋ ଝିଅ । ଧନେଶ୍ୱର ବାବୁ ତାକୁ ଆଣିଚନ୍ତି ବାହା ହେବାପାଇଁ । ଧନେଶ୍ୱରବାବୁଙ୍କ ଘର ଇଏ" ?

"ହଁ ଏଇ ଘର । ମୋର ନା ଧନେଶ୍ୱର ଦାଶ" ।

ବୁଢ଼ା କଟମଟକରି ଧନେଶ୍ୱର ଆଡ଼କୁ ଅନାଇଲା । ପୁରମାହାରେ ଅବଜ୍ଞା । ମୁହଁ ଗମ୍ଭୀରହୋଇ ଉଠୁଚି । ନମସ୍କାର ଶବର୍ଜିତ ।

"ତୁମେ ତାର କଅଣ ହୁଅ ବୋଲି କହୁଚ" ?

"ରାଧା ମୋର ଝିଅ" ।

"ଆଜି ତମେ ତାର ବାପା । ଏଇଆ ତ" !

"ଯାଅଯାଅ ଏଠି ରାଧା ଫାଧା କେହିନାହିଁ । କୋଉ ରାଇଜର ଭିକାରି କାଙ୍ଗାଳ, ଅଇଲା ପରିଚୟ ଦେବାକୁ ମୋରକୋଇଁ ଧନେଶ୍ୱରବାବୁ ! ଛିଛି ! ଟିକିଏ ହେଲେ ଲାଜ ମାଡ଼ିଲା ନାହିଁ ତମକୁ ? କେଉଁ ବେଶରେ ଆସିଚ ହେ ? ଝିଅକୋଇଁ ଦୁଆରକୁ ? ପଳାଅ ପଳାଅ, ଲୋକେ ଦେଖିଲେ ହସିବେ । ଏଠି ରାଧା ଫାଧା କେହିନାହିଁ" ।

ପଥରର ମୂର୍ତ୍ତିପରି ଥକ୍କାହୋଇ ବୁଢ଼ା ଠିଆହୋଇ ରହିଲା । ଗୁହିଁରହିଲା—ଦ'ଆଖିରୁ ଧାରଧାର ଲୁହ ଝରିଆସୁଚି । ଥରଥର ହୋଇ ଥରିଉଠୁଚି ଗୋଡ଼ହାତ । କେତେ ଦୁଃଖରେ କେତେଦିନ

ହେଲ ବୁଲିବୁଲି ଗାଁ ଗାଁରେ ବାଡି କଟାଇ କଟାଇ ଉପାସ ଭୋକରେ ଇଆ ଦୁଆରେ ତା ଦୁଆରେ ହାତପତାଇ ମାଗିଖାଇ ପ୍ରାଣକୁ ଟାଣିଟାଣି ହରିବ୍ୟସିଂହ ଆସି ପହଞ୍ଚିଲେ ଝିଅଟି ଦୁଆରେ, ଥରେ ଦେଖିଯିବା ଲାଗି । ମାତ୍ର ନକେ ଧନେଶ୍ୱରଦାଶ ମନା କରି ଦେଇଛନ୍ତି "ଏଠି ରାଧା ନାହିଁ" ?

"ରାଧା କୁଆଡ଼େ ଗଲା ତେବେ ? ତୁମେତ ମୋ ନାମା ପାଖରୁ ତାକୁ ଆଣିଛ" ?

ନାମା ଫାମା ମୁଁ କାହାରିକି ଜାଣେନା, ମୁଁ କାହାରିକି ଆଣିନାହିଁ । ପଳାଅ, କହୁଛି । କୋଉଠିକା ପାଗଳ, ଆସିଛି ମତେ ବିରକ୍ତ କରିବାକୁ" !

"ବିରକ୍ତ କରୁନାହିଁ ବାପ । ମୋର ଝିଅ ସେ । ମୁ ଆସିଛି ତାକୁ ଦେଖିବାକୁ । ସାଙ୍ଗରେ ନେଇ ଯିବାକୁ । ମୋର ବିନାନୁମତିରେ ତମେ ମୋ ଝିଅକୁ ଘେନି ପଳାଇ ଆସିଛ" ।

"ପଳାଇ ଆସିଲି ? ତୋର ଭଉଣୀ ଦଶଟଙ୍କା ଗଣିନେଲା, ସେ କଥା କଅଣ ମିଛ" ?

"ମିଛ ହଉ, ସତ ହଉ ମଣିଷ ଟଙ୍କା କଉଡ଼ିରେ କଣାବିକା ହୁଅନ୍ତି ନାହିଁ । ମୁଁ ତାର ବାପ । କନ୍ୟାଦାନ ମୁଁ କରିନାହିଁ" ।

"ତୁ ତାର ବାପ ! ହାଃ ହାଃ ହାଃ ହାଃ ତୁ ତାର ବାପ ! ଆଉ ଯେ ତୋର ଝିଅ । ମଦୁଆ ଗଞ୍ଜେଇଖୋର କଉଠିକାର, ଆସିଲା ମତେ ଆଇନ ପଢ଼େଇବାକୁ । କହୁଛି ଭଲେ ଭଲେ ଫାଟକ

ବାହାରକୁ ଯା । ନୋହିଲେ ଗୁରୁଙ୍କ ତଡ଼କାଇ ଧକ୍‌କା ମାରି ବାହାର କରିଦେବ ।

କାବାହୋଇ ଗୁହିଁରହିଲ ରଙ୍କଗୁରୁ । ଆଖିଦିଇଟାରୁ ନଆଁ ଝର ଝଡ଼ିପଡ଼ୁଛି । ଯେ କହୁଛି ଲଆର ନାଁ—ଧନେଶ୍ୱର ଦାଶ ! ଇଆର ହାତରେ ଝିଅକୁ ମୋର ଟେକିଦେଇଛି ନାନା !! କାହିଁକି ଝିଅକୁ ମୋର ବିଷ, ଜହର ଦେଇ ମାରି ପକାଇଲି ନାହିଁ ?

ଖଳା ଭିତରେ ଟହଲୁଛି ଧନେଶ୍ୱର । ନାଲିଆଖି ଦେଖାଇ କହିଲ—ଯା କହୁଛି ଭିକାରି, କାଙ୍ଗାଳ । ଧନେଶ୍ୱର ଦାଶ ତୋ ଭଳିଆ ଲୋକକୁ ବନ୍ଧୁ ବୋଲି ପରିଚୟ ଦେବାକୁ ରାଜିନୁହିଁ । କହିବୁତ ଭିକ ମୁଠାଏ ଅଣାଇ ଦେବ ।

ଗୁହିଁ ଗୁହିଁ ଥକ୍‌କାହୋଇ ଘଡ଼ିଏ ଠିଆ ହେଲାପରେ ଦୀର୍ଘ ଶ୍ୱାସଟିଏ ଟାଣି ନିରୁପାୟ ଅସହାୟ ରଙ୍କଗୁରୁ ଧୀରେ ଧୀରେ ନିଜର ଦୁର୍ବଳ ଶରୀରଟାକୁ ଏକପ୍ରକାର ଓଟାରି ଘୋସାରି ବାହାରକୁ ନେଇଗଲା । ବାଡ଼ି ଖଣ୍ଡିକ ଠୁକୁଠୁକୁ କରି ଧୀରେ ଧୀରେ କଙ୍କାଳମୂର୍ତ୍ତି ପରି ରାସ୍ତାର ମୋଡ଼ ଉପରେ ଅଦୃଶ୍ୟ ହୋଇଗଲା । ଆସିଥିଲା କେତେ ଦମ୍ଭ ନେଇ ଝିଅକୁ ନେଇ ଫେରିବ ବୋଲି । କିନ୍ତୁ ଫାଟକପାଖରେ ଧନଦାଶ ନିଜେ ଏମିତି ଅପମାନ ଦେଇ ତାକୁ ବାହାର କରିଦେଲା । ଜୀବନଟା ପ୍ରତି ଘୃଣା ଲାଗି । କାହିଁକି ଆଉ ବଞ୍ଚିରହିଚୁ ଚଣ୍ଡାଳ ! ମନ ଯୋ କହୁଛି । ଆଜି ମୁଁ ଆତ୍ମହତ୍ୟା କରିବି ନିଶ୍ଚେ । ଆଉ ଏ ସବୁ ସହିପାରିବ ନାହିଁ, କି ଦେଖିପାରିବ ନାହିଁ ।

ଧୀରେ ଧୀରେ ଗାଁ ସେ ମୁଣ୍ଡକୁ ଅଦୃଶ୍ୟ ହୋଇଗଲା ରଙ୍କଗୁରୁ ।

ଅଦୃଶ୍ୟ ହୋଇଗଲା ରାଜଗୁରୁ । ମାତ୍ର ଧନଦାଶ ନଜର ବାହାଦୂରଙ୍କ ଆଣି ରାଜାଙ୍କ ଆଗରେ ବଖାଣିଗଲା । ଖୁଡ଼ି କହିଲା—ଭଲ କରିଚୁ ପୁଅ । ହେଲେ ଆମେ ଟିକେ ସମୁଦ୍ରଟାକୁ ଦେଖି ଥାଆନ୍ତେ । ହୀରାମଣି ହସିଲା ଏବଂ ମନେ ମନେ କାନ୍ଦିଲା । ଅନୁରାଧା ନରେଳା କୋଠରୀ ଭିତରେ ଥାଇ ଛଟପଟ ହେଲା—ବାପା ଆସିଥିଲେ ! ମୁଁ ଦେଖିପାରିଲି ନାହିଁ !! ଏମିତି ଅପମାନ ପାଇ ଫେରିଗଲେ ? ଯେମିତି ହେଉ ମୁଁ ଆଜି ଏ ଘରୁ ପଳାଇବି । ତାଙ୍କୁ ଖୋଜିବି । ନ ପାଇଲେ ନଈକି ଡେଇଁପଡ଼ିବି ନିଶ୍ଚେ ।

ଢୁ ଢୁ କରି କାନ୍ଥଟାରେ ସେ ମୁଣ୍ଡଟାକୁ ପିଟି ଦେଲା । ହୀରାମଣି ଦୌଡ଼ିଆସି ଧରି ପକାଇ କହିଲେ—କାହିଁକି ଲୋ ଏମିତି ହଉଚୁ ? କଅଣ ଭାବିଚୁ ଏ ଲୋକଟାର ହୃଦୟ ବୋଲି ଗୋଟାଏ କିଛି ଅଛି, ନା ଟିକିଏ ହେଲେ ମଣିଷ-ପଣିଆ ଅଛି ବୋଲି ?

ହୀରାମଣିର କୋମଳ ଅନ୍ତର ଅନୁ ପାଖରେ ଆଜି ଧରାପଡ଼ି ଯାଇଚି । ସେ ତାକୁ କୁଣ୍ଢାଇ ପକାଇ କାନ୍ଦିଉଠିଲା—ନାନିଲୋ ! ମୋ ବାପା ପାଖକୁ ମୁଁ ଯିବି । ଫେରାଇ ଆଣ, ମୁଁ ତାଙ୍କୁ ଦେଖିବି । ମତେ ଛାଡ଼, ମୁଁ ଧାଇଁ ଯିବି । ତାଙ୍କୁ ଲେଉଟାଇ ଆଣିବି ।

ଧାଡ଼ୁକିନା କବାଟଟାକୁ ବାହାର ପଟକୁ ଭିଡ଼ି ନେଇ ବାହାର ପଟ ଶିକୁଳି ଲଗାଇ ଦେଲା ଧନେଶ୍ୱର । ଘରଭିତରେ ପଡ଼ି ରହିଲେ ହୀରାମଣି ଓ ଅନୁରାଧା । ହୀରାମଣିକୁ ଏଣିକି ସନ୍ଦେହ କଲାଣି ଧନେଶ୍ୱର । ହେଲେ ଶକ୍ତି ନାହିଁ । ତାକୁ ପୂରା ଅକ୍ତିଆରକୁ ଆଣିବା ପାଇଁ । ଭିତରେ ଥାଇ ହୀରା ଧାଡ଼ୁ ଧାଡ଼ୁ କରି କବାଟକୁ ବାଡ଼େଇ ଧମକାଇଲା—ଫିଟାଅ କହୁଚି, ନୋହିଲେ ଘରେ ନିଆଁ ଲଗାଇ ଦେବି । ମତେ ପୁଣି କବାଟ କିଳା ହଉଚି ? ଆଚ୍ଛା ହଉ ଦେଖିବା ।

ତୋ ବାପ୍ପକୁ ମୋ ବାପୁ । ତୁ ମୋର କଅଣ କରି ପକାଇବୁ ଦେଖିବା ଦେଖି ।

ଉପ୍ପରେ ଧନେଶ୍ୱର କବାଟ ଫିଟାଇ ଦେଲା । ବାହାରକୁ ଆସି ରାଗରେ ତମତମ ହୋଇ ହାରାମଣି କହିଲା—"କରେ ଧନଆଁ ? ମତେ କବାଟ ଦଉଚ୍ ? ଦେଖିବା ଦେଖି ତୋ ବାପ୍ପକୁ ମୋର ବାପ୍ପ । ଜାଣିଚୁ ହାବା କଅଣ କରିପାରେ ? ମୁଁ ଥାଉଁ ଥାଉଁ ପରପିଲାଟାକୁ ଆଣି ଘରେ ପୁରାଉଚୁ । ତା ବାପା ଅଇଲାରୁ ଅପମାନ ଦେଇ ବିଦା କରୁଚୁ ? ଭଲା ଦେଖିବା ଦେଖି" !

ଧନେଶ୍ୱର ଦାଣ୍ଡ ପିଣ୍ଡାକୁ ଯାଇ ମୁଣ୍ଡରେ ହାତ ଦେଇ ବସିପଡ଼ିଲା । ଭାବୁଚି—ଯାହାତ କଲା କଲା, କବାଟଟା ବାହାରପଟୁ ଖିଲଦେଇ, ଭୁଲ କରିଚି । ଭାଉଜକୁ ଅପମାନ ହେଲା । ଠିକ ହେଲା ନାହିଁ । ମନେ ହେଉଥାଏ ଘର ଭିତରକୁ ଦୌଡ଼ି ଯାଇ ହାରାମଣିର ପାଦଟାକୁ ଧରିପକାଇ କହି ଉଠିବ—ଭୁଲକରି ବସିଚି ଭାଉଜ—ମାଫକର । ତୋ ବିନା ମୋର ଅନ୍ୟ କେହି ଗତି ମୁକ୍ତି ନାହିଁ । ମତେ କ୍ଷମା ଦେ । 'ଦେହି ପଦପଲ୍ଲବମୁଦାରଂ' ।

—*O*—

## ବାର

ସର୍ବମୟୀ କର୍ତ୍ତ୍ରୀ ହୀରାମଣି । ଅବସ୍ଥାପନ୍ନ ଲୋକର ଝିଅ ସେ—ଚରମ ଯାହାହେଉନା କାହିଁକି ତାଠାରେ କଷ୍ଟହେଲେ ମଣିଷ ପଣିଆ ଅଛି । ଧନେଶ୍ୱର ତାକୁ ଆଜ ଘର ଭିତରେ ଥିବା ଅବସ୍ଥାରେ କବାଟ କିଳିଦେଲା । ଜାଣିଶୁଣି ଅପମାନ ଦେଲା । ହାଣ୍ଡିପିଲା ସେ—ସ୍ୱାମୀ ମୁହଁରୁ ମନ ମାନିଚ ବୋଲି ବୋଲମାନ ପଡ଼ିରହିଚ । ମନକଲେ ଦଳି ମକଚି ଏ ଘରଦ୍ୱାରକୁ ଚୁରମାର କରିଦେଇ ଯିବ ସେ । ଧନେଶ୍ୱର ତାକୁ ଅବିଶ୍ୱାସ କରେ । ଧନେଶ୍ୱର ତାକୁ ଛୁଡ଼ଛୁଡ ଭାବ ଦେଖାଇ ଅନ୍ୟକୁ ଧରିଆଣିଚି । ତାକୁ ଲୁଚାଇ ନରମା ଖୁଡ଼ି ସାଙ୍ଗରେ ଫୁସୁରୁ ଫାସର ଚାଲିଚି । ଆଜ୍ଞ ସହି ହେବ ନାହିଁ । ଦିନଟି ସାରା ଉଗ୍ରଚଣ୍ଡୀ ରୂପଧରି ସେ କାରବାର ହେଲା । ଖାଇଲା ନାହିଁ କି ପିଇଲା ନାହିଁ । ଧନେଶ୍ୱର ତା ମୁହଁରୁ ଆହାର ଛଡ଼ାଇ ନେବାକୁ ଫିକର କରିଚି । ପୂର୍ଣ୍ଣ କର୍ତ୍ତୃତ୍ୱ ଛଡ଼ାଇ ନେଇ ତାକୁ ସାମାନ୍ୟ ଦାସୀ ଚାକରାଣୀ ପରି ଏ ଘରେ ରଖିବାର ବ୍ୟବସ୍ଥା କରୁଚି ।

"ଗଙ୍ଗା ବୋଇଲେ ଥିବ,
ଗାଙ୍ଗୀ ବୋଇଲେ ଛାଡ଼ି ଚାଲିଯିବ" ।

ଦିନଯାକ ଡମ୍ଫସାପ ପରି ସେ ଫଁ ଫଁ ହେଉଚି । ଧନେଶ୍ୱର ଭୟରେ ତା ପାଖକୁ ଆସିପାରୁ ନାହିଁ । ନରମା ଆଜ ସତେକି ଅନ୍ତର୍ଦ୍ଧାନ ହୋଇଗଲାଣି । ସଞ୍ଜ ବୁଡ଼ିଲା, ରାତିଘଡ଼ିଏ ହେଲା, ଅନ୍ଧାର

ଭୋଟି ଆସିଲା । ଧନେଶ୍ୱର ଖଳା ବାଡ଼ରେ ମୁଣ୍ଡରେ ହାତଦେଇ ବସି ରହିଛି । ଭଗବାନ ଆଜ ତାକୁ ଉପାସ ରଖିଦେଇଛି । ଖାଇବାକୁ ଡାକ ନାହିଁ । ସେ ବି ଆସିନାହିଁ । ଧୀରେ ଧୀରେ ହାରାମଣି ଅନୁରାଧା ଘରକୁ ପଶିଲା । ସେ ବି ଆଜ ଉପାସ ଭୋକରେ କବାଟ କଣରେ ଗଡ଼ୁଛି । ଡାକିଲା ହାରାମଣି । କହିଲା—"ଉଠିଆ ଅନୁ ! ଆ ମୋ ପଛେ ପଛେ" ।

ଦାଣ୍ଡଆଡ଼ କବାଟ ଭିତରୁ କାଳା ହୋଇଛି । ହାରାମଣିର ହାତରେ ଗ୍ଲେଟ ଢ଼ିବରିଟିଏ ମିଞ୍ଜି ମିଞ୍ଜି ହୋଇ ଜଳୁଛି । ହାତଟାକୁ ଧରି ଘୋସାରି ଘୋସାରି ଉଠାଇ ଠିଆ କରାଇଦେଲା ଅନୁକୁ । ଲୁନ ଲୁନ କାନ ପାଖକୁ ମୁହଁନେଇ କହିଲା—"ଆ, ଆ ମୋ ସାଙ୍ଗରେ । ତତେ ମୁଁ ବାଟ କଢ଼ାଇ ବିଦା କରିଦେଇ ଆସିବି । ତେଣିକ ଖଞ୍ଜରେ ତୋ ବାଟ ତୁ ଧରୁଥା । ପାଞ୍ଚଟା ଟଙ୍କା ହାତରେ ଧ । ବଢ଼ିବାଟେ ପଳା" ।

ମୁକ୍ତି ! ମୁକ୍ତିର ବାଟ ଦେଖାଇ ଦେଉଛି ନିଜେ ହାରାମଣି । ବିଶ୍ୱାସ କରିପାରୁନାହିଁ ଅନୁରାଧା—କେବଳ କୁହୁ କୁହୁକରି ଅନାଇ ରହିଛି । ମତ ମଣିବାକୁ ସାହସ ତାର କାହିଁ? ଭାବୁଛି ଗୋଟାଏ କିଛି କୌଶଳ ଖେଳୁଛି । ହାରାମଣି ତାକୁ ଗୋଟାଏ ବଡ଼ଖାଲ ଭିତରକୁ ଠେଲି ଦେବାକୁ ପାଞ୍ଚ କରିଛି ନିଶ୍ଚୟ ।

"ଆ ମୋ ସାଙ୍ଗରେ କହୁଛି ।

ଅନୁକୁ ବାରି ପଟକୁ ଭିଡ଼ିନେଲା । ତବାଟାକୁ ଅଗଣା ଭିତରକୁ ଥୋଇ ଦେଲା । ଅନ୍ଧକାର ଭିତରେ ଭିଡ଼ି ଓଟାରି ପଗାର ପାରି ହେଲା । ଆଗେ ଆଗେ ସେ ଆଉ ତା ପଛେ ପଛେ ଅନୁରାଧା । ଖଣ୍ଡିଏ ମାତ୍ର ଲୁଗା ଦେହରେ । ଭୋକ ଉପାସ ଓ ଉତ୍ତେଜନାରେ ବରଡ଼ାପତ୍ର ପରି ଦେହ ଥରୁଛି । ମାତ୍ର ଉତ୍ତେଜନାରେ ବେଶିବଳ

ଦେଖା ଦେଇଚ ହୀରାମଣି ଦାଣ୍ଡରେ । ଚାଲିଲା ସେ ଆଗେ ଆଗେ, ପଛେ ପଛେ ତାର ଅନୁରାଧା । ଅନ୍ଧକାର ଗମ୍ଭୀର ଭିତରେ ମଣିଷ ଚାଲି ବାଟଟି ଝାପ୍ସା ହୋଇ ଆଗେଇ ଯାଇଚ ନଈକୂଳ ଆଡ଼େ । ଦୁହେଁ ଯାକ ଗାଧୁଆ ତୁଠରେ ଠିଆହେଲେ । ପାଖରେ ଘାଟ ଡଙ୍ଗାଟି ଧୀର ପବନରେ ଝୁଲୁଚ । ମାତ୍ର ସେତେବେଳକୁ ଘାଟ ବନ୍ଦ ହୋଇ ଗଲାଣି । ଘାଟିଆ ଘରକୁ ପଳାଇଲାଣି । ଛଳ ଛଳ ଛଳ ଛଳ ହୋଇ ଡଙ୍ଗା ଦାଣ୍ଡରେ ପାଣି ହାବୁକା ବାଡେଇ ହେଉଚ ।

"ତୁ ଏଣିକି ଯାହା କରିବୁ କର । ହେଇଟି ସେ ପଟେ ମହାଦେବ ମନ୍ଦିର । ରାତିଟା ସେଠି ଲୁଚିରହ କାଲି ସକାଳୁ କେହି ନ ଉଠିବା ଆଗରୁ ଏ ଗାଁ ଛାଡ଼ି କୁଆଡ଼େକି ପଳାଇ ଯିବୁତ ଯା, ନଇଲେ ହେଇଟି କାଟଧାରପରି ଗହୀରିଆ ପାଣି ଠିଆହୋଇଚ—ଯାହା ତୋ ମନ ତା କରୁଥା ମୁଁ ଯାଉଚ । ସେ ପଟେ ସେ ଚଣ୍ଡାଳଟା ସଡ଼କ ଉପରକୁ ବାଟ ଜଗିବସିଚ । ଏଣେ ହାକଡ଼େ ମାଇଲୋକେ ଦେଖିଲେ ଛାଡ଼ିବେ ନାହିଁ । ପଳାଇ ଯିବାପାଇଁ ଗୋଟିଏ ବାଟ ହେଲା ଏଇ ବାଟଟି । ନଈପାରି ହେଲେ କେତେଦୂର ଯିବୁତ ମହେନ୍ଦ୍ରପୁର ଗାଁ । ସେ ଗାଁରେ ଭଲମଣିଷ ଅଛନ୍ତି । ସେଇଠି କାହା ଘରେ ରହି ବାପାର ଖବର ନେବୁ । ତେଣିକି ତୁ ଆଉ ତୋ ବାପା ଯାହା ବରାଦ କରିବାର କରିବ । ମୁଁ ଯାଉଚ ଗାଳିଦବୁ ନାହିଁ । ଡରିବୁ ନାହିଁ । ଛାତିରେ ସାହସ ବାନ୍ଧ ତୋ ବାଟ ତୁ ଖୋଜନେ । ରାତିଟା — ମାନିଆ ମୁଁ ତାକୁ ସେଇଠି ସେ ଖଳାବାଡ଼ିରେ ଅଟକାଇ ଦେବି । ନରମା ଆଜ ଆସିବାକୁ ସାହସ କରିବ ନାହିଁ । ଏଣିକି ତୋ ଭାଗ୍ୟ ଭଉଣି" !

ଗୋଡ଼ତଳେ ମୁଣ୍ଡି ଆଟିଏ ମାରି ଅନୁରାଧା ଅନ୍ଧାର ଭିତରେ ଠିଆ ହେଲା । ହୀରାମଣି ଟଙ୍ଗଟଙ୍ଗ ହୋଇ ଘରକୁ ଫେରି ପଡ଼ିଲା ।

ପଥର ମୂର୍ତ୍ତିଟିପରି ଅନୁରାଧା ନଈ ଅରୁଢ଼ ଉପରେ ଠିଆହୋଇ ରହିଛି । ଭାବୁଛି କଅଣ କରିବ ? ନଈକି ଡେଇଁପଡ଼ି ପ୍ରାଣହରାଇ ଦେବ, ନା ଡଙ୍ଗାଟିରେ ଚଢ଼ି ଆରପାରକୁ ପାରହୋଇ ଯିବାଲାଗି ଚେଷ୍ଟା କରିବ ? ନଈରେ ସୁଅତ ପ୍ରବଳ ଭାବରେ ଚାଲିଛି । ଶେଷକୁ ଭାବିଲା ଜୀବନର ସବୁମାୟା ଛିଣ୍ଡାଇଦେଇ ପାଣିଭିତରକୁ ଡେଇଁପଡ଼ିବ ।

କିନ୍ତୁ ଜୀବନର ମାୟା ମଣିଷ ପାଖରେ କମ ନୁହେଁ ! ଏଣେ ବାପାଙ୍କୁ ଦେଖିବାଲାଗି ମନ ବ୍ୟାକୁଳ । କଅଣ କରିବ ଅନୁରାଧା ? ଭାବିହେଉଛି । ଅରୁ ପାଖରେ ମହାଦେବ ମନ୍ଦିରର ମଣ୍ଡପଟି ଏବଂ ସାନବଡ଼ କନିଅର ଗଛରବଣ । ସଞ୍ଜ ହୋଇଲାଣି ମନ୍ଦିରଟି ଶୂନଶାନ ।

ପଛ ଆଡ଼କୁ ଫେରି ଫେରି ଅନାଉଛି । ମୁକ୍ତି ପାଇବା ଯେତେ କଷ୍ଟକର ନୁହଁ, ମୁକ୍ତିପାଇଁ ପଳାଇ ଯିବାଟି ତହୁଁ ବଳି କଷ୍ଟକର ଓ ଦୁଃସାଧ୍ୟ । ଅନେକବେଳ ଭାବିଲା ଅନୁରାଧା । ପ୍ରତି ମୁହୂର୍ତ୍ତରେ ଭୟ ହେଉଥାଏ—କିଏ ତାକୁ ଘରୁ ଖୋଜି ଖୋଜି ଆସିଗଲାକି ଆଜି ? କିଏ ହେଲାକଲେ ଧରିନେଇ ବନ୍ଧଶାଳରେ ପୂରାଇଦେବେ, ମାଡ଼ଦେବେ, ଗଞ୍ଜଣାଦେବେ । ବଡ଼ ଭୟଙ୍କର କଥା । ଚିନ୍ତା କଲାବେଳକୁ କିନ୍ତୁ ଦେହ ଥରିଉଠୁଛି !

ଆଗରେ ଗଭୀର ନଦୀ । ଡଙ୍ଗାଟି ହାତ ପାହାନ୍ତାରେ ଥିଲେବି ଅନଭ୍ୟସ୍ତା ବାଳିକା ତାକୁ ନେଇ କଅଣ କରିବ ? ଧୀରେ ଧୀରେ ରାତି ଗଡ଼ି ଚାଲିଥାଏ । ମନ୍ଦିର ଭିତରକୁ ଯାଇ ଲୁଚି ରହିବାଟା ମଧ୍ୟ ନିରାପଦ ନୁହଁ । ଭାବି ପାରୁନାହିଁ—ଭାବିବାଟା ହିଁ ଭୟଙ୍କର

ଲାଗୁଛି । ଶେଷକୁ ସ୍ଥିରକଲା ପାଣିକି ଡେଇଁପଡ଼ି ପ୍ରାଣ ବିସର୍ଜନ କରି ଦୁଃଖମୟ ସଂସାରରୁ ଚିରଦିନପାଇଁ ମୁକ୍ତିଲାଭ କରିବ । ବାପାଙ୍କ ଭାଗ୍ୟ ବାପାଙ୍କୁ ଯେବେ କୁଆଡ଼େ ଯାଉଛି ଯାଉ । ଅସହାୟ ବାଳିକା ତାଙ୍କର କି ଉପକାର କରିପାରିବ ?

ରାତି ଅଧ ସରିକି ଅନୁରାଧା ଧୀରେ ଧୀରେ ପାଣିକୂଳକୁ ଗଡ଼ିଲା । ପ୍ରତିମା ବିସର୍ଜନ ତାର ଏକମାତ୍ର ଉପାୟ ।

× × × ×

"ଆଜି ନରୋତ୍ତମ ଭାଇନା, ସିନେମା ଦେଖିଯିବା । ଭଲ ଫିଲମ୍ ଟାଏ ଅଛି । ବୋଉଙ୍କ ଅନୁମତି ମାଗି ସାରିଲୁଣି ଆମେ" ।

ଛାତ ଉପରେ ଚାରିଆଡ଼େ ଫୁଲକୁଣ୍ଡ ଥୁଆ ହୋଇଛି । ନରୋତ୍ତମକୁ ମଝିରେ ବସାଇ ଜ୍ୟୋତ୍ସ୍ନା, ମୋତି ଓ ବାବୁଲା ଘେରିଛନ୍ତି । ଦୋଟି ଭଉଣୀ ଓ ଗୋଟିଏ ଭାଇ । ଜ୍ୟୋତ୍ସ୍ନା ଓ ମୋତି ବୟସରେ ବର୍ଷେ ସାନବଡ଼ । ଉଭୟଙ୍କ ଭିତରେ ପ୍ରତିଯୋଗିତା ଚାଲିଛି । ହସିଉଠି ନରୋତ୍ତମ କହିଲା—ମୁଁ ଆଜି ଗୋଟାଏ ଜାଗାକୁ ଯିବି ବୋଲି ସ୍ଥିର କରିଛି । ସୁତରାଂ ତମ ସାଙ୍ଗରେ ସିନେମା ଦେଖି ଯିବାର ମୋର ଉପାୟ ନାହିଁ ।

"ଉପାୟ ନାହିଁ ? ସତ କହୁଛ ? ଆମେ କବାଟ ଖିଲ ବାଟ ବନ୍ଦ କରିଦେବୁ । କେମିତି ଯିବ ବାହାରକୁ" ?

ଜ୍ୟୋତ୍ସ୍ନା ନରୋତ୍ତମ ହାତଟାକୁ ଧରିପକାଇ ଭିଡ଼ିଛି ଘର ଭିତରକୁ—"ଆସ, ବନ୍ଦୀଶାଳାରେ ପଶ" ।

ମୋତି ପଛରୁ ଠେଲି ଉଠାଉଚି । କହୁଚି—"ଉଠ, ଚାଲ, ଯିବା । ଆଉ କଣ୍ଟ ଶୁଣାଯିବ ନାହିଁ" ।

"କଣ୍ଟ ଶୁଣା ଯିବ ନାହିଁ ପୁଅ ! ଆଜ ମୁଁ କଣ୍ଟ ଜଳଖିଆ ନିଜ ହାତରେ ତିଆରି କରିଚି । ଭଲହେଉ ମନ୍ଦହେଉ ନିଶ୍ଚୟ ତୁମକୁ ଖାଇବାକୁ ହେବ—କହି କହି ଘରୁ ଉପରକୁ ପଶିଆସିଲେ ବିନୋଦିନୀ । ହାତରେ ଗୁଡ଼ାଏ ଜଳଖିଆ । ବୋଉ ହାତରୁ ଥାଳିଟା ଟେକିନେଇ ଆଗରେ ଥୋଇଦେଲା ଜ୍ୟୋତ୍ସ୍ନା । କହିଲା—ସାଙ୍ଗହୋଇ ଖାଇବା ଭାଇନା । ଏକାଥାଳରେ ସମସ୍ତେ ଖାଇବା ।

ଗୋଟାଏ ରାଜଭୋଗ ଉଠାଇନେଇ ନରୋତ୍ତମ ପାଟି ଭିତରକୁ ଜ୍ୟୋତ୍ସ୍ନା ଗୁଞ୍ଜି ଦେଉଦେଉ କହିଉଠିଲା—ମୋ ଘଣ ମୋ ମୁଣ୍ଡ ଖାଇବ । ମୁଁ ଖୋଇ ଦେବ ଏବଂ ସୁନା ପୁଅଟିପରି ଆଜ ତୁମେ ଖାଇବ ।

ମୋତି କହି ଉଠିଲା—ଖାଲି ଖାଇବନାହିଁ ଆମକୁ ସାଙ୍ଗରେ ନେଇ ସିନେମା ଦେଖାଇ ଆଣିବ ।

ବାବୁଲା କହିଉଠିଲା—ସେତିକ ନୁହେଁ ନାନା, ରାତିରେ ଏଇଠି ଆମ ଘରେ ରହିବେ, ଏଇଠି ଖାଇବେ ।

ଅଦୂରରେ ଠିଆହୋଇ ରହି ବିନୋଦିନୀ ଏ ଦୃଶ୍ୟ ଦେଖି ମୁଗ୍‌ଧ ହେଉଥିଲେ, ଭାବୁଥିଲେ ନରୋତ୍ତମ ଆଉ ଜ୍ୟୋତ୍ସ୍ନା ଦୁଇଟି କେବେ ଏକ ହେବେ !

ନବୀନ ବାବୁ ଇଞ୍ଜିନପୁର । ସାଢ଼େ ଚାରିଟାବେଳକୁ ଫେରି ଆସିଥିଲେ । ସେ ବି ଧୀରେ ଧୀରେ ଘରୁଉପରକୁ ଉଠିଆସିଲେଣି ।

ପିଲାଙ୍କୁ ହାକିଦେଇ କହିଲେ—ଥାଉରେ ବାବୁଲା ! ପିଲାଟା ସାଙ୍ଗରେ କାହିଁକି ଏମିତି ଲଗାଇଚ ? — କୃତ୍ରିମ କୋପ ଇଏ । ସେବି ମନେ ମନେ ଏ ଖେଳ ଉପଭୋଗ କରୁଚନ୍ତି । ଗୋଟିଏ କଥା ଓ ଗୋଟିଏ ଉଦ୍ଦେଶ୍ୟକୁ କେନ୍ଦ୍ରକରି ଏ ସବୁ ଆଡ଼ମ୍ବର—ନରୋତ୍ତମ ଓ ଜ୍ୟୋତ୍ସ୍ନାର ବିବାହ ପ୍ରସ୍ତାବ । ପଦ୍ମବାସିନୀ ତ ଏକାବେଳକେ ରାଜିହୋଇ ଯାଇଚନ୍ତି । ନରୋତ୍ତମ ତ କୌଣସି ଆପତ୍ତି ଶୁଣାଉ ନାହିଁ । ଖାଲି ବାକି ପରୀକ୍ଷାଟା । ମୋଡି ପାଖକୁ ଲାଗିଆସି କହିଲା—ବାପା, ତୁମେ କୁଆଡ଼େ ଯିବନାହିଁ ତ ?

ଝିଅକୁ ସ୍ନେହରେ କୋଳ ଆଡ଼କୁ ଆଉଜାଇ ନେଇ ନବୀନବାବୁ ପଚାରିଲେ—କାହିଁକି ?

"ଆମେ ଟିକେ ସିନେମା ଯିବୁ । ଡ୍ରାଇଭର ଆମକୁ ଗାଡ଼ିରେ ନେଇ ଛାଡ଼ି ଆସିବ, ଏବଂ ସଇଲା ବେଳକୁ ଯେନ ଆସିବ" ।

"ହଉ ଯାଅ, ତଳେ ଡ୍ରାଇଭର ଅପେକ୍ଷା କରିଚି । କହି ଆସ" ।

ଦୌଡ଼ିଗଲା ବାବୁଲା ।

ମୋଡି ନରୋତ୍ତମ ଆଗରେ ତାଳିମାରି ଉଠି କହିଲା—ଠିକ ହୋଇଚି । ବାପାତ ବରାଦ କରିଦେଲେଣି, ନଯାଇ ଯିବ କୁଆଡ଼େ ? ଚାଲ ଧନମଣି ! ଆମକୁ ନେଇ ଚାଲ । ନାହିଁ କରିବାକୁ ଆଉ ବାଟ ନାହିଁ !

ହସୁଚନ୍ତି ନବୀନବାବୁ । ହସୁଚନ୍ତି ବିନୋଦିନୀ । ଛାତ ଉପରେ ଟହଲି ଗୋଲାପ କୁଣ୍ଡ ପାଖକୁ ଯାଇ ଫୁଟନ୍ତା ଫୁଲ ଗୁଡ଼ିକୁ ନିରୀକ୍ଷଣ କରୁଚନ୍ତି । ଦୂରେଇ ଯାଇ ସ୍ୱାମୀ ସ୍ତ୍ରୀ ହସାହସି ହେଉଚନ୍ତି ।

ଜ୍ୟୋସ୍ନା ହାତଧରି ଭିଡ଼ ଡେଇଁଲା । ନରୋତ୍ତମ ହସି ହସି ଉଠି ଠିଆ ହେଲା । ସମସ୍ତେ ହୋଇ ଆସୁଚି । ତଳେ ଗାଡ଼ି ଠିଆ ହୋଇଚି । ପନ୍ଦର ମିନିଟ ଭିତରେ ସମସ୍ତେ ଲୁଗାପଟା ପିନ୍ଧି ବାହାରି ପଡ଼ିଲେ । ଛଅଟା ଶ୍ରେଣିରେ ଛବି ଆରମ୍ଭ । ନଅଟା ଶ୍ରେଣିରେ ଶେଷ । ବାପା ବୋଉଙ୍କୁ କେହି ଡାକିଲେ ନାହିଁ । ସେମାନେ ବି ସଙ୍ଗରେ ଯିବା ପାଇଁ ଆଗ୍ରହ ପ୍ରକାଶ କଲେ ନାହିଁ । ନରୋତ୍ତମକୁ ମଝିରେ ବସାଇ ଉଭୟ ଭଉଣୀ ଦୁଇ କଡ଼କୁ ଲାଗି ବସିଲେ । ବାବୁଲ ବସିଲା ଗୋଟିଏ କଡ଼କୁ । ଅନ୍ଧକାର ଭିତରେ ଚଳଚିତ୍ର ଆରମ୍ଭ ହେଲା । ଜ୍ୟୋସ୍ନା ନରୋତ୍ତମର କାନ୍ଧଟି ଉପରେ ହାତ ଥୋଇଚି । ମୋତି ଢଳି ଆସିଚି ନରୋତ୍ତମ ଆଡ଼କୁ । ମଝିରେ ବସି ରହି ରହି ଦୀର୍ଘଶ୍ୱାସଟି ମାନ ଟାଣୁଚି ଯୁବକ ନରୋତ୍ତମ । ମନେ ମନେ ସ୍ଥିର କରି ନେଉଚି—ସମସ୍ତଙ୍କର ଯେବେ ଗୋଟିଏ ଇଚ୍ଛା—ସେଇ ଅଗ୍ରଜ ହେବାର କାରଣ କିଛି ଖୋଜି ପାଉନାହିଁ । ଜ୍ୟୋସ୍ନା ହେଉ, ମୋତି ହେଉ ଉଭୟେ ସୁନ୍ଦରୀ, ଉଭୟେ ଯୁବତୀ, ଉଭୟେ ଆଧୁନିକା ଏବଂ ଶିକ୍ଷିତା । ବଡ଼ଲୋକର ପିଲା । ପରଦା ଉପରେ ଛବି ଚାଲିଚି । ମାତ୍ର ଆନମନା ଭାବେ ନରୋତ୍ତମ ଭାବିଚାଲିଚି କେତେ କଥା । ମନ ପରଦା ଉପରେ ଆଉ ଗୋଟାଏ ଛବି ତାରି ଆଗେଇ ଚାଲିଚି । ଗୋଟିଏ ରିଲ ପଛକୁ ଆଉ ଗୋଟିଏ ରିଲ, ତାପଛକୁ ଆଉ ଗୋଟିଏ ରିଲ । ଆଖି ଛଳ ଛଳେଇ ଆସୁଚି । ଦେହ ଅବଶ ଲାଗୁଚି । ମନ ଜଡ଼ ହୋଇ ଯାଉଚି । ଭାବନା ଚିନ୍ତାର ଅନନ୍ତସାଗର ଉପରେ ଭାସି ଚାଲିଚି ।

ହାଫ୍ ଟାଇମ୍; ପୁଣି ଆରମ୍ଭ । ସାଢେ ନଅଟା ବେଳକୁ ଶେଷ ହେଲା । ଭିଡ଼ ଭିତରେ ଠେଲା ପେଲା ହୋଇ ବାହାରକୁ

ସମସ୍ତେ ଆସିଲେ । ନରୋତ୍ତମ ହାତଧରି ଜ୍ୟୋତ୍ସ୍ନା ଗାଡ଼ି ଭିତରକୁ ଉଠିଗଲା । ତା ପଛକୁ ମୋହନ ଓ ବାବୁଲା ।

× × × ×

ରାତି ହେଇଚନ୍ତି ବନୋଦମି—ଆସନ୍ତା ମାର୍ଗଶୀର ମାସକୁ ଦିନ ସ୍ଥିର କରନ୍ତୁ । ଆମେ ପ୍ରସ୍ତୁତ ଅଛୁଁ । ନରୁ ଆଉ ଲେଶ ମାତ୍ର ଅନ୍ଧକାର ଆଭାସ ମିଳୁ ନାହିଁ । ସେ ନିତ୍ୟପ୍ରତି ଆସୁଚି ଯାଉଚି । ପିଲାଙ୍କ ସାଙ୍ଗରେ ମିଳା ମିଶା, ଖେଳା ବୁଲା କରୁଚି ।

ରାତି ଖଣ୍ଡିକ ପାଇ ଚନ୍ଦ୍ରେଶ୍ୱରଙ୍କ ପାଦ ପାଖରେ ସମର୍ପିଦେଇ ପଦ୍ମବାସିନୀ କହିଲେ—ମା, ସବୁ ଶୁଭରେ କାମ ବଢୁ । ମଙ୍ଗଳମୟୀ, ମା ! ସମସ୍ତଙ୍କର ମଙ୍ଗଳ କର । ମୋ ମନୋବାଞ୍ଛା ପୂର୍ଣ୍ଣ ହେଉ ।

× × × ×

ରାତି ଗଡ଼ି ଚାଲିଚି । ଅନୁରାଧା ପାଣିକୂଳକୁ ଗଡ଼ି ଠିଆ ହେଲା । ଅଳ୍ପ ଉଚ୍ଚ ଅତଡ଼ି, ତଳକୁ ଗଭୀର ପାଣି । ପାଖରେ ଡଙ୍ଗାଟା ଝୁଲୁଚି । ଖୁଣ୍ଟରେ ବନ୍ଧା ହୋଇଚି, ନାଉରୀର ହାତ ନବାଜିଲେ ସେ ଅଚଳ । କଡ଼ ପରି ପଡ଼ିଚି । ଭାସୁଚି ମାତ୍ର । ଧୀରେ ଧୀରେ ଅନୁ ତଳକୁ ଓହ୍ଲାଇଲା । ପ୍ରାଣଟା ତା ପାଖରେ ବର୍ତ୍ତମାନ ସାମାନ୍ୟ କ୍ରୀଡ଼ା ପୁତ୍ତଳିକା ପରି । ପିଙ୍ଗିଦେବ ସେ ତାକୁ ଆଜି ପାଣି ଭିତରକୁ । ମରିବ—ଚିରଦିନ ପାଇଁ ସେ ବୁଡ଼ି ମରିବ । ଅତଳ ଜଳ ତଳେ ନିଜକୁ ଟାସଦେବ; ଆଉ ତାର ଅନ୍ୟ ଉପାୟ ନାହିଁ । ଦୂରରୁ ଦେଖାଯାଉଚି ଦିଇଟା ଲଣ୍ଠନ ଧରି କେତେ ଜଣ ଲୋକ ଖୋଜି ଖୋଜି ନଈ କୂଳକୁ ଗଡ଼ୁଚନ୍ତି । ଗଭୀର ରାତିରେ ଗୃହଆଙ୍କ ମାରବ

ନିସ୍ତବ୍ଧ । ଦୂରରୁ ସାମାନ୍ୟ ଟିକିଏ କଥା ବାର୍ତ୍ତା ସ୍ପଷ୍ଟ ଶୁଣାଯାଉଛି । ଜଣେ କହୁଛି—"ନିଶ୍ଚୟ ଏଇ ଦିଗକୁ ଆସିଛି । ନୋହିଲେ ଅନ୍ୟ ଆଡ଼େ ପଳାଇ ଯିବାକୁ କୌଣସି ବାଟ ନାହିଁ" ।

ଆଉ ଜଣେ ପଗ୍ଭରୁଛି—"କେତେବେଳୁ ସେ ଘରୁ ବାହାରିଲେଣି କହିପାରିବ" ?

ଭୃତ୍ୟ ଜଣିକର ପାଟି ବୋଧହୁଏ ଖୋଦ ଧନେଶ୍ୱର ଦାଶଙ୍କର—"ପ୍ରାୟ ପହରେ ରାତି ଭିତରେ" ।

"ଘାଟିଆ ନିଶ୍ଚୟ ପାରିକରି ନାହିଁ । ପାରି କରିଥିଲେ ଜଣା ପଡ଼ଯାଇ ଥାଆନ୍ତା । ସଞ୍ଜବେଳୁ ତ ସେ ଘାଟ ଗ୍ଭଡ଼ି ଆସିଛି" ।

ଧନେଶ୍ୱର କହିଲେ—ସେ ପାରି କରିନାହିଁ ।

"ତେବେ ନିଶ୍ଚୟ ମିଳିଯିବେ । ହୁଏତ ମହାଦେବ ମନ୍ଦିର ଭିତରେ ଥିବେ" ।

ସବୁକଥା ଶୁଣିଲା ଅନୁରାଧା । ପାଣିକି ଡେଇଁ ପଡ଼ିବା ଛଡ଼ା ଅନ୍ୟ ଉପାୟ ନାହିଁ । କିନ୍ତୁ ଜୀବନର ମାୟାଟା କମ କଥା ନୁହଁ । ମରଣ ଫାଶକ ମେଲି ଦେଇଛି ବାଟ କଢ଼ାଇ ନେବାକୁ । ଆଗରେ ଗଭୀର ଜଳ, ପ୍ରବଳ ସ୍ରୋତ । ମାତ୍ର ଜୀବନର ମାୟାଡ଼ୋରି ପଛକୁ ଭିଡ଼ି ଧରୁଛି । ଖୋଜିବା ଲୋକେ ଲଣ୍ଠନ ଧରି ପାଖେଇ ଆସୁଛନ୍ତି । ହୁଏତ ପାଞ୍ଚ ଦଶ ମିନିଟ ଭିତରେ ପାଖରେ ପହୁଞ୍ଚି ଯିବେ । ଧରି ପକାଇବେ । ଏଥର ଶାସ୍ତିର ସୀମା ରହିବ ନାହିଁ । ପିଠିରେ ପଡ଼ିବାକୁ କେହି ନାହିଁ ।

ତେବେ ଉପାୟ ?

ଉପାୟ ଏକମାତ୍ର ପାଣିକୁ ଡେଇଁ ପଡ଼ିବା !!

କୂଳକୁ କୂଳକୁ ଧୀରେ ଧୀରେ ଘୁଞ୍ଚିଯାଉଛି ଅନୁରାଧା ଆତ୍ମହତ୍ୟା କରିବ । ଆତ୍ମହତ୍ୟା କରିବାଟା ମହାଗହନ କଥା । ଭାବି ଭାବି ମଣିଷ ପାଗଳ ହୋଇଯାଏ । ସମ୍ପୂର୍ଣ୍ଣ ଜ୍ଞାନ ନ ହରାଇଲେ ମଣିଷ ଆତ୍ମହତ୍ୟା କରେ ନାହିଁ । ଶରୀରର ପ୍ରତ୍ୟେକ କଣାଟି ପ୍ରତ୍ୟେକ ରୁମଟି ସଙ୍କୁଚିତ ହୋଇ ପଛେଇ ରହୁଥାଏ ପଛକୁ ଭିଡ଼ି ହେଉଥାଏ । ଉତ୍ୟକ୍ତ ଉତ୍ତେଜିତ ମନ କହୁଥାଏ ଚଟ ପଟ ଡେଇଁ ପଡ଼ିବାକୁ । ଉତ୍ତପ୍ତ ରକ୍ତକଣିକା ଲାଲ ଲାଲ ପଡ଼ିଯାଇଥାଏ । ଆଖି ଦଇଟା ମନ୍ଦାର ଫୁଲ ପରି ନାଲି ଟହ ଟହ ଦିଶୁଥାଏ । ହୃତ୍‌ପିଣ୍ଡର ସମସ୍ତ ଶକ୍ତି କେନ୍ଦ୍ରୀଭୂତ ହେଉଥାଏ ଚକ୍ଷୁ—ତାରକା ଓ ସ୍ନାୟୁମଣ୍ଡଳୀରେ । ଅତି ଉଗ୍ର ଓ ଅତି ଚଞ୍ଚଳ ହୋଇ ଉଠିଥାଏ ଆତ୍ମହତ୍ୟା କରିବାକୁ ଉଦ୍ୟତବ୍ୟକ୍ତି । ତାର ଚେହେରାଟାକୁ ଦେଖିଲା ମାତ୍ରେ ଜଣା ପଡ଼ି ଯାଉଥାଏ । କିନ୍ତୁ ଅନୁରାଧାକୁ ଏ ଅନ୍ଧାର ରାତିରେ ଦେଖୁଛି କିଏ ଯେ ଅଟକାଇ ରଖିବ ?

ଗଙ୍ଗାର ବାଲିର ଏଣେତେଣେ, ଖମାଖାଲ ଗୁରିଆଡ଼େ— ଖୋଜି ଖୋଜି ପାରୁନାହାନ୍ତି ଆସିଛନ୍ତି ଲକ୍ଷ୍ମୀନିଧି ଧନେଶ୍ୱର ଏବଂ ତାଙ୍କ ଲୋକେ । ଅନୁରାଧାର ହୃତ୍‌ପିଣ୍ଡ ଧମ୍ ଧମ୍ ଧମ୍ ଧମ୍ ପଡ଼ୁଛି ଉଠୁଛି । ପ୍ରବଳ ଉତ୍ତେଜନା ଓ ଉଦ୍‌ବେଗରେ ସାରା ଶରୀର ତାର ଥରୁଛି, କମ୍ପୁଛି । ଭାବି ଭାବି ସେ ପାଗଳ ହୋଇ ଗଲାଣି । ଡେଇଁ ପଡ଼ିବ ପାଣିଭିତରକୁ । ପାଣିକୂଳକୁ ପାଦ ବଢ଼ାଉଛି । ସେ ଏକାବେଳେ ଅଜ୍ଞାନ ହୋଇପଡ଼ିଛି । ଠିଆ ହୋଇଥିବା ସ୍ଥାନରେ ବସିପଡ଼ିଲା । ଗଙ୍ଗାର ପାଣିଭିତରକୁ ପାଦ ଦଇଟା ବୁଡ଼ାଇ ଦେଲା । ଖୁପକନା ପାଣିଭିତରକୁ ବୁଡ଼ିଯିବ ଟିମେ । ଧନେଶ୍ୱରଙ୍କ ଲୋକେ ମହାଦେବ ମନ୍ଦିରର କନଅର ଗଛମୂଳସାକ ଖୋଜୁଛନ୍ତି । ଅନୁରାଧାର ଅଜ୍ଞାତରେ କିଏ ଜଣେ ଧୀରେ ଧୀରେ ଅଡ଼ଡ଼ି ତଳକୁ ଓହ୍ଲାଇଆସି

ଆସ୍ତେ ଆସ୍ତେ ପାଖେଇ ଆସି ଝପ୍‌କନା ଅନୁରାଧାର ହାତଟାକୁ ଧରିପକାଇ ପଛକୁ ଭିଡ଼ିନେଇ ଧୀର ସ୍ୱରରେ କହିଉଠିଲା— "କିଏ ତୁ" ?

ସର୍ବନାଶ ! ମରିବାକୁ ଆସିଥିଲା—ମରି ବି ପାରିଲା ନାହିଁ । ଭୋଗିବାକୁ ଭାଗ୍ୟରେ ଯାହାର ବିଧାନ ଅଛି, ମରିବ ସେ କେମିତି ? ଅନୁରାଧାର ତଣ୍ଟି ଅଠା ଅଠା ହୋଇଯାଉଚି । ଛାତିଟା ଧମ୍ ଧମ୍ ପଡ଼ୁଚି ଉଠୁଚି । ମୂହୂର୍ତ୍ତକର ବିଳମ୍ବରେ ସେ ଧରାପଡ଼ିଗଲା । ଏଥର ଦୁଃଖର ତାର ସୀମା ରହିବ ନାହିଁ ।

"କିଏ ତୁ ମା" ?

ଜ୍ଞାନ ଫେରିଆସିଚି ଅନୁରାଧାର । ଉତ୍ତେଜନା କମିଯାଇଚି । ପ୍ରାଣଟାନ୍ତି କାନ୍ଦି ଉଠୁଚି । ଇଏତ ଧନେଶ୍ୱର ନୁହେଁ ? ଅତି ପରିଚିତ ସ୍ୱର । ଅତି ଆପଣାର ।

"କିଏ, ବାପା" ?

"ଅନୁ ? ମାଆ ମୋର, ମୁଁ ବାପା" ।

ଲୋତକ ପଡ଼ୁଚି ବାପାର ଛାତି ଉପରକୁ ଟିପଅଟି କିନ୍ତୁ ଦୁର୍ବଳ ଶରୀର ପ୍ରବଳ ଉତ୍ତେଜନାରେ ଥରିଉଠୁଚି ଥର ଥର ହୋଇ ।

"ମୋ ମା ରାଣୀ ? ତୁ କଆଁ ଆସିଥିଲୁ ଏତେ ରାତିରେ ଏ ପାଣି କୂଳକୁ" ?

"ମରିବାକୁ" ।

"କାହିଁକି ଲୋ ମା" ?

"ଉପାୟ ନାହିଁ ବାପା, ପରେ କହିବି" ।

"ଆସ ଆଗ ଏଠୁ କେମିତି ପଳାଇଯିବା । ସେମାନେ ହେଇଟି ମହାଦେବ ମନ୍ଦର ଭିତରକୁ ଆଲୁଅ ନେଇ ପଶୁଚନ୍ତି । ସେମାନେ ଏଇଲାଗେ ଅଟଡ଼ ତଳକୁ ଗଡ଼ିବେ । ଆମକୁ ଧରନେବେ । ଚାଲଜଠ, ବେଗି ପଳାଇ ଯିବା" ।

ହତାଶ ସ୍ୱରରେ ଅତି ଧୀରେ ରାଜଗୁରୁ କହି ଉଠିଲ—ମୁଁ ଜାଣେ ସେମାନେ ଖୋଜ ଖୋଜ ଆସୁଚନ୍ତି । ମୁଁ ସେ ମଣ୍ଡପ ଉପରେ ପଡ଼ିଥିଲ । ତାଙ୍କ ପାଟି ଶୁଣିଲ, କଥା ବାରିଲ । ଅନୁମାନ କଲି । ଏଣିକ ଆସି ପହଁଚିଲ । ଦେଖିଲ ତୁ ! ଆ ଉଠୁ ତେବେ, କନ୍ତୁ କୁଆଡ଼େ ପଳାଇଯିବା ?

"ଯିବା ଆସ । ବେଗି, ଡଙ୍ଗା ଉପରକୁ" । ଝିଅର ମନ ଭିତରେ ହଠାତ୍ ଗୋଟାଏ ଉପାୟ ଦେଖାଦେଲ । ସେ କହିଲ 'ଆସ ଡଙ୍ଗା ଉପରକୁ' । କନ୍ତୁ ଜୀର୍ଣ୍ଣ ଶୀର୍ଣ୍ଣ ବୃଦ୍ଧ ରାଜଗୁରୁର ଶରୀରରେ ଶକ୍ତି କାହିଁ ?

ଅଟଡ଼ ଉପରେ ଆଲୁଅ । ମୁହୂର୍ତ୍ତକେ ତଳକୁ ଓହ୍ଲାଇ ଆସିବେ ସେମାନେ । ଉତ୍ତେଜନାରେ ବୁଢ଼ା ବାପାକୁ ଏକପ୍ରକାର ଭିଡ଼ ଓଟାର ନେଇ ଅନୁରାଧା ଡଙ୍ଗା ଉପରକୁ ଉଠାଇଲ । ଧନେଶ୍ୱର ପନ୍ଦର ଗଜ ଦୂରରେ ଥାଇ ଦେଖିନେଲ ସେମାନଙ୍କୁ । କହିଉଠିଲ— "ହେଇରେ ସେ ଡଙ୍ଗା ଉପରେ" ! ସଙ୍ଗଲୋକ ଦଇଟା ଏକ ପ୍ରକାର ଦୌଡ଼ିଗଲେ ।

ମାତ୍ର ଅନୁରାଧା ସେତେବେଳକୁ ଡଙ୍ଗା ବନ୍ଧା ଦଉଡ଼ିଟାକୁ ଫିଟାଇ ଦେଇସାରିଚ ଏବଂ ବୁଢ଼ା ରାଜଗୁରୁ ଶରୀରର ଶେଷ ଶକ୍ତିତକ ଶିଥିଳହାତ ଦୁଇଟିରେ ଠୁଳକରାଇ କାତଟି

ଉଠାଇଧରି ଅତଡ଼ ଉପରକୁ ଖୁବ୍ ଜୋରରେ ଠେଲାଟାଏ ଦେଇ ଡାକ ଉଠିଚନ୍ତି—

"ଜୟ ଗଙ୍ଗାମାତା,"

ଲୋକଦୋଟି ଡଙ୍ଗାଟାକୁ ଧରିପକାଇବା ଲାଗି ଭୁସ୍କନା ପାଣିଭିତରକୁ ପଶିଗଲେ । ମାତ୍ର ଗଙ୍ଗାର ଜଳର ପ୍ରବଳସ୍ରୋତ ହାଲୁକା ଡଙ୍ଗାଟାକୁ ସେତେବେଳକୁ ଭିତରଆଡ଼କୁ ଅନେକ ଦୂରକୁ ଭସାଇ ନେଇଗଲାଣି ସ୍ରୋତର ଅନୁକୂଳରେ ଡଙ୍ଗାଟି ସେତେବେଳକୁ ତୀର-ବେଗରେ ଭାସିଯିବାକୁ ଆରମ୍ଭ କରିଦେଲାଣି । କୂଳେ କୂଳେ ଧନେଶ୍ୱର ଏବଂ ଲୋକ ଦୁଇଟି ଲଣ୍ଠନ ହାତରେ ଧରି ପ୍ରାୟ ମାଇଲଏ ବାଟ ଦୌଡ଼ିଲେ—ଆଶାକଲେ ହୁଏତ ଡଙ୍ଗାଟା ବୁଲିପଡ଼ି କେଉଁଠାରେ ଲାଗିଯିବ ବା କୂଳକୁ ବାଡ଼େଇ ହୋଇଯିବ । ମାତ୍ର ଜଳସ୍ରୋତର ବେଗ ଏବଂ ଭାଗ୍ୟ ସ୍ରୋତର ଗତି ଆଗରେ ହାତୀର ମଧ୍ୟ ଶକ୍ତି ଅତିକ୍ଷୀଣ । ଗୃହୁଁ ଗୃହୁଁ ଆକାଶର ଅସ୍ପଷ୍ଟ ଆଲୋକ ଭିତରେ ସ୍ରୋତମୁଖୀ ଡଙ୍ଗାଟି ବାପ ଝିଅ ଉଭୟଙ୍କୁ ନିଜ କୋଳରେ ପୂରାଇ ଏକାବେଳକେ ଅଦୃଶ୍ୟ ହୋଇଗଲା । ଶେଷକୁ ହତାଶାର ପୁଟୁଳି ବାନ୍ଧି ଦୀର୍ଘନିଃଶ୍ୱାସକୁ ସମ୍ବଳ କରି ଧନେଶ୍ୱର ଏବଂ ତାଙ୍କ ସାଙ୍ଗ ଦୁଇଜଣ ଘରକୁ ଫେରିଲେ । ସେତେବେଳକୁ ରାତି ପ୍ରାୟ ଦୁଇଟା ହେବ । ଗଙ୍ଗାର ଜଳସ୍ରୋତ ଉପରେ ଭାସମାନ ନୌକାଟି ଭାସିଗଲା ଏବଂ ଗଙ୍ଗାର ଗର୍ଭର ନିସ୍ତବ୍ଧତା ଭିତରେ ହୀରାମଣିଙ୍କ ଉପରେ ଷୋଳପଣ ରାଗ ଓ କ୍ରୋଧ ବର୍ଷଣ କରି ଧନେଶ୍ୱର ବାଡ଼ କବାଟରେ ଦୁମ ଦୁମ ବାଡ଼େଇଲା ।

ଦୁମ୍ ଦୁମ୍ ଦୁମ୍—"ଫିଟାଲେ ରଣ୍ଡ ।"

ଭିତରୁ ଗରଜିଉଠିଲା ହୀରାମଣି—

"ବାପ ରେ, କେତେ ଗର୍ଜନ । ସତେକି ମୋ ହାକିମ ଅଛନ୍ତି । ଛତରା ଅରକ୍ଷିତଟା କହୁଚି ରଣ୍ଡ । ଆରେ ହେ ରଣ୍ଡିଆ, ଘଣ୍ଡିଆ, ମତେ ଚିଡ଼ଉଚୁ ? ଜାଣୁନା ମୁଁ କଣ ନ କରିପାରେ ? ଫିଟେଇବି ନାହିଁ । ରାତିଯାକ ବସିଥା ସେଇଠି । ମୁଣ୍ଡ ବାଡ଼େଇ ହଉଥା । କହୁଚି—ରଣ୍ଡ । ତତେ ଖାଇବାରେ ଅଣ୍ଡିରାପୁଅ ଉର୍ଦ୍ଧିବ" ।

ହୀରାମଣିର ରାଗ ଦେଖି ଧନେଶ୍ୱର ମୁଣ୍ଡରେ ହାତ ଦେଇ ସେଇଠି ସେମିତି ବାଡ଼ପଟେ ବସି ରହିଲା । ପ୍ରବଳ ଉତ୍ତେଜନାରେ ଦେହ ଥରୁଚି । କିନ୍ତୁ ଉପାୟ କଅଣ ? ମନ ସେତେବେଳକୁ ଘରଧରିଲାଣି । ନାଗଶାପର ଲାଙ୍ଗୁଡ଼ରେ ହାତମାରିଚି ସେ ଆଜି । ନାଗୁଣୀ ଚୋଟ ମାରିଚି । ବିଷରେ ଜର୍ଜରିତ ହୋଇ ଉଠିଚି ଧନେଶ୍ୱରର ଦେହ ମନ ସବୁଯାକ । ବିଷ ଝାଡ଼ିବା ମନ୍ତ୍ର ଏକମାତ୍ର ଜାଣେ ହୀରାମଣି । ହଉ ସକାଳ । ରାତି ପାହୁ । ସେ ଯେବେ ଦୟା କରିବ ତେବେ ଯାଇ କବାଟ ଫିଟାଇବ ସିନା !

ଆଜି ସାରାଦିନ ସାରରାତି ଉପାସ ଭୋକରେ ପଡ଼ିରହିଚି ଧନେଶ୍ୱର । ରାତିଟି ସାରା ମୁଣ୍ଡରେ ହାତଦେଇ ସେଇଠି ସେଇ ବାଡ଼ପଟେ ଅନିଦ୍ରା ବସି ରହିଲା ଧନେଶ୍ୱର । ତା ଛଡ଼ା ଅନ୍ୟ ଉପାୟ କିଛି ନାହିଁ ଯେ !

ସେମିତି ସେମିତି ରାତିଟି ପାହିଲା । ମଶା ବଣରେ ବସି ବସି ମୁଣ୍ଡଟାକୁ କୌଣସି ପ୍ରକାର ଥୟ କରିନେଲା ଧନେଶ୍ୱର । ସକାଳ ହେଲା । ଧାଡ଼ୁକିନା ବାଡ଼ କବାଟଟାକୁ ଭିତରୁ ଫିଟାଇ ଏରୁଣ୍ଡି ଉପରେ ଠିଆହୋଇ ପଡ଼ିଲା ହୀରାମଣି । ସେ ବି ରାତିସାରା ଉପାସ

ପଡ଼ିଚି । ଶୋଇନାହିଁ, ନାଗୁଣୀପରି ଫଁ ଫଁ ହେଉଚି । ମୁଣ୍ଡରେ ଲୁଗା ନାହିଁ । ଫିଟା ବାଳତକ ଗୁଚ୍ଛପଣ ମୁହଁଉପରେ ତ ବାରପଣ ପିଠି ଉପରେ ଓହ୍ଲାଇଚି । ଆଖି ଦିଇଟା କୁମ୍ଭାଟୁହା ଆଖିପରି ନାଲି ଟହ ଟହ । ଉପର ବନ୍ଧକୁ ଦୁହାତରେ ଧରି ବାହାର ଆଡ଼କୁ ଟୁଙ୍କି ଆସି, ପିଣ୍ଡାତଳକୁ ବସିଥିବା ଧନେଶ୍ୱର ଆଡ଼କୁ ଲକ୍ଷ୍ୟକରି ଗର୍ଜି ଉଠିଲା—"ଉଠି ଯାଉଚନା, ବସିରହିଚ । କୋଉଠୁ ଗୋଟାକୁ ଧରିଆଣି ଘରେ ନାଟ ଲଗେଇଚ । କୁଆଡ଼େ ସେ ଗଲାତ ଗଲା, ମଲା ତ ମଲା ଇଆର ଶୋକ ପଡ଼ିଯାଇଚି । ତାଆର ପାଇଁ କାଲିଠଉଁ ଖିଆନାହିଁ, ପିଆନାହିଁ, ବାଇବାଉଳା ହୋଇ ଯାଇଚ । ଉଠିଯାଆ କହୁଚି । ଦାନ୍ତପହ ଘସ, ଗାଧୋଇ ଆ । ଖା ପିଇ । ଆଗପରି ସୁଖ ଶାନ୍ତିରେ ଦିନ କଟା । ଗୋଟାଏ ଟୋକା ପାଇଁ କଅଣ ହେଇ ଯାଉଚ ଇଏ ? ଛି ଛି ! ନିଲଜ, ଅରକ୍ଷିତ" ।

ତଳକୁ ମୁହଁ ପୋତି ପିଣ୍ଡାଟିତଳେ ବସିରହିଚି ଧନେଶ୍ୱର । ଏରୁଣ୍ଡି ଉପରୁ ଉହୁଙ୍କି ପଡ଼ିଚି ହୀରାମଣୀ । ପୁଣି ଗର୍ଜି ଉଠିଲା—କହିଲି—ଉଠିଯାଆ ବୋଲି । ବସିରହିଚ, ଉଠ କହୁଚି, ନୋହିଲେ ମୁଁ ଚାଲିଲି ବାପଘରକୁ ।

ଏତକ କହି ତମ ତମ ହୋଇ ହୀରାମଣି ଅଗଣା ଭିତରକୁ ଫେରିପଡ଼ିଲା । ଧନେଶ୍ୱର ଚମକି ଉଠିଲା । ହୀରାମଣି ବାହାରିଲାଣି ବାପଘରକୁ । ଦୀର୍ଘନିଃଶ୍ୱାସଟିଏ ଟାଣିଲା । ଧୀରେ ଧୀରେ ଉଠିଲା । ଧୀରେ ଧୀରେ ଉଠିଯାଇ ମୁହଁହାତ ଧୋଇଲା । ହୀରାମଣି ତେଲ ଗିନାଟା ଆଗରେ ଆଣି ଥୋଇ ଦେଲା । ହାତନେଡ଼ିରେ ତେଲଢ଼ାଳି ଧନେଶ୍ୱର ଲଗାଇବାକୁ ଆରମ୍ଭ କଲା ।

—*O*—

## ତେର

ଟ୍ରେଛ ଡ଼ଙ୍ଗାଟି ମହାନଦୀରେ ଭାସି ଭାସି ଚାଲିଛି । ଟ୍ରେଛ ଟ୍ରେଛ ତରଙ୍ଗ ଆସି ପିଟି ହୋଇ ଯାଉଛି ଡଙ୍ଗାଟିର ଦକଡ଼ରେ "ଛଳ ଛଳ, ଚଳ ଚଳ" । କହୁଛି—"ଆରେ ହେ ମାନବ, ଚଳ, ଚଳ, ଚଳ, । ବସି ରହିବାକୁ ବେଳ ନାହିଁ । ଭାବିବାକୁ ଅବସର ତୋର ନାହିଁ । ସମୟର ସୁଅ ଉପରେ ଭାଗ୍ୟର ଡ଼ଙ୍ଗାଟି ତୋର ଭାସି ଚାଲିଛି । ବସି ରହି ବିଶ୍ରାମ କରିବାର ଉପାୟ ତୋର ନାହିଁ । ଭଲ ମନ୍ଦ, ସୁଖ ଦୁଃଖ, ଆନନ୍ଦ ନିରାନନ୍ଦ, ଜନ୍ମ ମରଣ ଭିତର ଦେଇ ତତେ ଗତି କରିବାକୁ ହିଁ ହେବ । ଯିବାକୁ ତୁ ରାଜି ହୁଅ କିମ୍ବା ନହୁଅ ତତେ ଭାସି ଯିବାକୁ ହିଁ ହେବ" ।

"ଛଳ ଛଳ, ଚଳ ଚଳ," "ଚାଲ ଚାଲ, ଆଗକୁ ଚାଲ," "ଆଗେଇ ଚାଲ, ଆଗେଇ ଚାଲ ।" ନୌକାଟି ଭାସି ଭାସି ଚାଲିଛି । ତୁ ବି ଭାସି ଭାସି ଚାଲ । ଆଗକୁ ଚାଲି ଯିବା ହିଁ ଏ ସୃଷ୍ଟିର ଉଦ୍ଦେଶ୍ୟ । ପଛ ଆଗ ଚାରିଆଡ଼ ଅନ୍ଧକାର । କିଛି କେଉଁଆଡ଼େ ଦିଶୁନାହିଁ । ଦିଶିବ ନାହିଁ । ଭୂତ ଗତ, ଆଗତ ଅନାଗତ । ମଣିଷର ଆଖି ପାଏ ନାହିଁରେ—କିଛି ଦିଶେ ନାହିଁ । ଭବିଷ୍ୟତ ଅନ୍ଧକାର । କଳ୍ପନାର ଆଲୁଅ ଟିକେ ପାଏ ନାହିଁ । ନଦୀଗର୍ଭ ସୁଗଭୀର, ଅନ୍ଧକାରମୟ । କେତେ ପାଣି ଉପରେ ତୁ ଭାସି ଭାସି ଯାଉଛୁ ଜାଣିପାରିବୁ ନାହିଁରେ ମାନବ ! ତୁ ଅତି କ୍ଷୁଦ୍ର ଜୀବ । ଜୀବନଟି ତୋର ଅଛି ବୋଲି

ଏତିକି ମାତ୍ର ଜାଣିପାରୁଚୁ । ପରମୁହୂର୍ତ୍ତରେ କେଉଁ ଆବର୍ତ୍ତରେ ପଡ଼ି ଜୀବନ-ନୌକାଟି ତୋର ଟୁବ୍‌କିନା ବୁଡ଼ିଯିବ ତାର ଠିକଣା ନାହିଁରେ କ୍ଷୁଦ୍ରଜୀବ ! ଜୀବନଟି ତୋର ଅତି କ୍ଷୁଦ୍ର । କିନ୍ତୁ ସେଇ କ୍ଷୁଦ୍ର ପଦାର୍ଥଟିକୁ ସମ୍ବଳକରି କେତେ ଦମ୍ଭ, କେତେ ଅଭିମାନ, କେତେ ବଡ଼ିମା, କେତେ ଅହଙ୍କାର ତୋର ପ୍ରାଣକେନ୍ଦ୍ରରେ ଘନୀଭୂତ ହେଉଚି ରେ ଜାଣିପାରୁଚୁତ ?

ବୁଢ଼ା ରାଜଗୁରୁ କ୍ଷୀଣ ଦୁର୍ବଳ ଶରୀରଟାକୁ ନୌକା ଉପରେ ଥୋଇ ବସି ବସି ଭୂତ, ବର୍ତ୍ତମାନ ଓ ଭବିଷ୍ୟତ ଭାବି ହେଉଚି—ଥିଲି କଅଣ, ହେଲି କଅଣ, ହେବି କଅଣ ? ଅନୁରାଧା କଥା ଆଗକୁ ବସିପଡ଼ୁଚି । ବେଶି ଭାବିପାରୁ ନାହିଁ । ଶେଷକୁ ଆତ୍ମହତ୍ୟା କରିବାକୁ ଆସି ବାପାଙ୍କ ଦେଖା ମିଳିଲି—ଏଇ କଥା ଭାବିଲି ବେଳକୁ ସେ ଜାଣିପାରୁଚି ଦୁନିଆରେ ନିଶ୍ଚୟ ଗୋଟାଏ କାହାର ଅଦେଖା ହାତ ସମ୍ପୂର୍ଣ୍ଣ ଅଜଣାରେ କାହାକୁ କେମିତି କୁଆଡ଼େ ଭସାଇନେଇ କେତେବେଳେ କାହା ସହିତ କାହାକୁ ଯୁଟାଇ ଦେଉଚି ପୁଣି ପରମୁହୂର୍ତ୍ତରେ ତଫାତ କରାଇ ଦେଉଚି ତାର ହିସାବ ସେଇ ଏକା ଜାଣେ ।

ଅନେକ ଦିନର ହଜାଧନକୁ ପାଇଚି ଏଇ ହେଲି ରାଜଗୁରୁର ଆନନ୍ଦ । କିନ୍ତୁ ନଦୀର ସ୍ରୋତ କେଉଁ ଅଗାଧ ଅନନ୍ତ ସମୁଦ୍ର ଆଡ଼କୁ ତାଙ୍କୁ ଭସାଇ ନେଇ ଯାଉଚି ସେ କଥାଟି ସେ ଭାବିପାରୁ ନାହାନ୍ତି ।

ଏଇ ନଈ ମା, ଅତ୍ୟାଚାରୀଠାରୁ ଆଜ ରକ୍ଷାକରି ଆଣିଚି । ହୁଏତ ଏଇ ମା ବାପ, ଝିଅ ଦୁହିଁଙ୍କୁ ଘେନି ଯାଉଚି ଗଭୀର ସାଗରର ମୀନାର୍ଣ୍ଣବ ଭିତରେ ବୁଡ଼ାଇ ମାରିବାପାଇଁ ।

ମାରବା ପାଇଁ ? ନା ନା ନା ! ନଈ ମା, ଏଇ ନଈ ମା ଯେଉଁ ଦେଶରେ ନାହିଁ ସେ ଦେଶ ମରୁଭୂମି । ସେ ଦେଶରେ ଜନ ପ୍ରାଣୀ ନାହିଁ । ସେ ଦେଶରେ ତରୁଲତା ନାହିଁ, ସେ ଦେଶରେ ସଭ୍ୟତା ଉଦ୍ଭବ ହୋଇ ପାରନାହିଁ । ନଦୀ-ମାତୃକା ଖୋଜ ଖୋଜ ଆର୍ଯ୍ୟ ଆସିଛନ୍ତି । ସଭ୍ୟତା ଓ ଜ୍ଞାନ ବିଜ୍ଞାନ ପରିବ୍ୟାପ୍ତ ହୋଇଛି । ମହିଷ ମହୀଷ ବୋଲି ପରିଚୟ ଦେଇଛି । ଧନ, ଜନ, ଗୋପ, ଲକ୍ଷ୍ମୀ, ଶିକ୍ଷା, ସଂସ୍କାର, ସଂସ୍କୃତି, କୃଷି, ଶିଳ୍ପ ଯାହା କିଛି କୁହ ସବୁ ଏହି ନଦୀ ମାତୃକାର କୂଳେ କୂଳେ ଚହଟି ଯାଇଛି ଘରଆଡ଼େ, ଚେର ମେଲିଛି ପୃଥିବୀର ଚତୁର୍ଦ୍ଦିଗରେ । ବୁଢା ବାଜରୁ ରୁ ବସି ବସି ଭାବୁଛି । ଘରଆଡ଼ ଅନ୍ଧକାରମୟ, ଦାଗଦାଗ ଦିଶୁନାହିଁ । ଆକାଶରେ କେତୋଟି ତାରକା ଦପ ଦପ ଜଳୁଛନ୍ତି । ତଳେ କଳା କାଚ ପରି ଇଗୁ ଗୁଳିକା ନଈ ଧାର । ତାର ଉପରେ ନୌକାଟି ଭାସି ଭାସି ଗୁଲି ଯାଉଛି । ଦ'ପାଖରେ ଚହଲା ପାଣି ପିଟି ହୋଇ ଯାଉଛି— ଛଳ ଛଳ, ଚଳ, ଚଳ । ଗୁଲରେ ଗୁଲ ଆଗେଇ ଗୁଲ । ଆଗରେ ତୋର ଅନନ୍ତ ଭବିଷ୍ୟତ ଲମ୍ବି ଯାଇଛି । ଆଗରେ ତୋର ସୁଖଦୁଃଖମୟ ଅଜଣା ଜୀବନକାଳ । ତାପରେ ନିଶ୍ଚିତ ମୃତ୍ୟୁ, ତାପରେ ପୁଣି ତୁ ଏଇ ଧରଣୀକୁ ଅନ୍ୟରୂପ ଘେନି ଫେରି ଆସିବୁ ।

"ପୁନରପି ଜନନଂ ପୁନରପି ମରଣଂ ।
ପୁନରପି ଜନନୀ ଜଠରେ ଶୟନଂ ॥
ଇହ ସଂସାରେ ଖୁ ଦୁସ୍ତର ଦୋଷ ।
କଥମିହ ମାନବ ତବ ସନ୍ତୋଷ" ?

ସନ୍ତୋଷ କାହିଁରେ ମାନବ ତୋର, କାହିଁରେ ହିଁ ତୋର ସନ୍ତୋଷ ନାହିଁ । ଜନ୍ମ-ଯୌବନ-ଜରା, ସୁଖ-ଦୁଃଖ, ଭଲ-ମନ୍ଦ,

ପାପ-ପୁଣ୍ୟ, ସବୁ ପଡ଼ିଯାଉଛି ପଛରେ ତୋର, ତୁ କିନ୍ତୁ ଆଗେଇ ଯାଉଛୁ ଆଗକୁ । କିଛି ତୋ ସାଙ୍ଗରେ ଯାଉନାହିଁ । ଯାଉଛି କିନ୍ତୁ ସବୁର ନିର୍ଯ୍ୟାସ—ତୋର ସଙ୍ଗେ ସଙ୍ଗେ, ତୋର ଆଗେ ଆଗେ, ତୋର ଭବିଷ୍ୟତ ପଥର ସାଥୀ ହେବାଲାଗି ।

ନୌକାଟି କେତେଦୂର ଭାସି ଗଲାଣି ଜଣାନାହିଁ । ଧୀରେ ଧୀରେ ପୂର୍ବଚକ୍ରବାଳ ଈଷତ୍ ସ୍ୱଚ୍ଛ ଦିଶିଲାଣି । ବେଳାକୂଳର ଗଛଲତା ଅଳ୍ପ ଧୂସରବର୍ଣ୍ଣ ଦିଶିଲାଣି । ଛଳ, ଛଳ, ଛଳ, ପାଣିଢେଉ ପିଟିହୋଇ ଯାଉଛି । ଆଶାର ଆଲୋକ ବୃଦ୍ଧର ମନ ଭିତରେ ଦେଖାଦେଲା । ନଈର ଗୋଟାଏ ବାଙ୍କ ଉପରେ ବୁଢ଼ା ଉଠି ଠିଆହେଲା । ଅନଭ୍ୟସ୍ତ ହାତରେ ବାଉଁଶର କାତଟିଏ ଧରି ମଙ୍ଗମୋଡ଼ି ନୌକାଟିକୁ ଗୋଟିଏ କୂଳକୁ ଲଗାଇବାକୁ ଚେଷ୍ଟାକଲା । କିନ୍ତୁ ହାୟ ! ଭାଗ୍ୟ ଯାହାକୁ ମଝିନଈରେ ଭସାଇ ନେଇ ଯାଉଛି, ଆତ୍ମରକ୍ଷା କରିବା ପାଇଁ, ନୌକାର ମଙ୍ଗ ମୋଡ଼ି କୂଳକୁ ଲଗାଇ ଦେବାପାଇଁ, ଶକ୍ତି କାହିଁରେ ତାର ? କାତେ, ଦିକାତ, ତିନୋଟି-କାତ । ନୌକାଟା ଏପଟ ସେପଟ ହେଉଛି । ତାପରେ ଚତୁର୍ଥଥର କାତ ମାରିଲା ବେଳକୁ କାତଟି ପାଣିତଳେ ମଟାଳ ପଙ୍କରେ ଅଟକି ଯାଇ ବୁଢ଼ା' ଜର୍ଜର ଦେହକୁ ଛିଟିକାଇ ଫିଙ୍ଗିଦେଲା ନଦୀଗର୍ଭକୁ । ଝୁପ୍‌କିନା ପ୍ରେତ ଶବ୍ଦଟିଏ ମାତ୍ର ଶୁଣାଗଲା । ଚମକି ଉଠିଲା ଅନୁରାଧା ଚିତ୍କାର କରି ଉଠିଲା—"ବାପା ! ମୋ ବାପା" !

କିନ୍ତୁ ହାୟ ! ସେତେବେଳକୁ ପାଣିସୁଅରେ ନୌକାଟି ଭାସି-ଯାଇ କାହିଁ କେତେ ଦୂରରେ ହେଲାଣି । ଆଗପଛ କିଛି ଦିଶୁନାହିଁ । ନୌକାଟା ଭାସିଚାଲିଛି । ଅନୁରାଧାର ବିକଳ କ୍ରନ୍ଦନକୁ ଅପେକ୍ଷା ନକରି ପାଣିଢେଉ ବାରମ୍ବାର ନୌକା କଡ଼ରେ ପିଟିହୋଇ କହୁଛି—

ଛଳ, ଛଳ, ଚଳ, ଚଳ, ଚଳ । ଗୃଲରେ ଅନୁରାଧା, ଟୋ ବାଟରେ ତୁ ଗୃଲ । ତା ବାଟରେ ସେ ଗଲା । ତୋର କାହିଁକି ତା ପାଇଁ ଚିନ୍ତା ? ଭାଗ୍ୟର ସ୍ରୋତ, ସମୟର ସ୍ରୋତ, ମହାକାଳର ପ୍ରବାହମାନ ପ୍ରବାହରେ କିଏ କାହାର ?

"କା ତବ କାନ୍ତା କସ୍ତେ ପୁତ୍ରଃ,
ସଂସାରୋଽୟମତୀବ ବିଚିତ୍ରଃ" ।

ବାପା ଗୃଲିଗଲା ? ତା ବେଳ ହେଲା । ସେ ଗୁଡ଼ି ଗୃଲିଗଲା ତୋର କି ଗଲା ? ତୁ କିଆଁ ଏତେ ମୁଣ୍ଡ କୋଡ଼ ହେଉଚୁ ? ସମସ୍ତେ ମରନ୍ତି । ମରଣଶୀଳ ସଂସାରଟା ଇଏ । ହ ହନିଆ ମାୟା ମମତା ।

"ଜାତସ୍ୟ ହି ଧ୍ରୁବୋ ମୃତ୍ୟୁ ଧ୍ରୁବଂ ଜନ୍ମ ମୃତସ୍ୟଚ
ତସ୍ମାଦପରିହାର୍ଯ୍ୟେଽର୍ଥେ । ନତ୍ୱଂ ଶୋଚିତୁମର୍ହସି" ।

କୋର କିଆଁ ଏତେ ଶୋଚନା ? ବାପା ସଂସାରକୁ ଆସିଥିଲା ଏକା, ଗୃଲିଗଲା ଏକା । ଭାଗ୍ୟ ହାତରେ ଖେଳନାଟାଏ ସେ, ଆଜ ଅଧ ବାଟରେ ତୁ ବୁଡ଼ିମରିବାକୁ ବାହାରିଥିଲୁ ରାଧି, ସେ ତୋତେ ବଞ୍ଚାଇଲା । କିନ୍ତୁ ସେ ପ୍ରତ୍ୟାବର୍ତ୍ତମୁଖୀ ଜଳସମାଧି ଦେଲା । ତୁ ତାକୁ ରକ୍ଷା କରିପାରିଲୁ ନାହିଁ ମା, ରକ୍ଷା କରିପାରିବୁ ନାହିଁ ! ଗୃଲ ଗୃଲ ଗୃଲ । ଚଳ ଚଳ ଚଳ, ଛଳ ଛଳ ଛଳ ।

ତୀର ବେଗରେ ନୌକା ଭାସିଯାଉଚି ସ୍ରୋତ ଅନୁକୂଳରେ । ଆଗରେ ନଈ ମୁହାଣ । ତାପରେ ସୁନୀଳ ଜଳଧି—ଅସୀମ ଅନନ୍ତ

ଗଭୀର ଜଳାର୍ଣ୍ଣବ । ଅନୁରାଧା ଭାବିଲା ଏବଂ କାନ୍ଦିଲା, କାନ୍ଦିଲା ଏବଂ ଭାବି ହେଲା— ସେଇ ସାଗର ବକ୍ଷରେ ମୋର ପ୍ଲେଟ ନୌକା ଖଣ୍ଡିକ ବୁଡ଼ିଯାଉ ତେବେ, ସେଇ ଅନନ୍ତ ସାଗର ବକ୍ଷରେ ମୋର ଏ ଶରୀର ସମାଧି ହେଉ ।

ନୌକା ଖଣ୍ଡିକ ତୀର ବେଗରେ ଭାସିଗଲା ଦୂରକୁ ଦୂରକୁ ସମୁଦ୍ର ଆଡ଼କୁ । ଜୀବନ ସ୍ରୋତଟା ଏମିତି ଏମିତି ତୀର ବେଗରେ ଭାସି ଯାଉଛି ମୃତ୍ୟୁ ପାରାବାର ଆଡ଼କୁ । କିନ୍ତୁ ଅହମିକା-ସର୍ବସ୍ୱ ମାନବ ମୃତ୍ୟୁଞ୍ଜୟ ହେବାକୁ ଗର୍ବ କରୁଛି । କହୁଛି ବିଜ୍ଞାନ ସାହାଯ୍ୟରେ ସେ କାଳଜୟୀ ହେବ, ସପ୍ତବ୍ରହ୍ମାଣ୍ଡ-ବିଜୟୀ ହେବ । ହାୟରେ ବିଜ୍ଞାନ ! ବିଜ୍ଞାନ ନା ଅଜ୍ଞାନତା ? ହେ ମାନବ ! ତୋର ବିଜ୍ଞାନର ବଳ କେତେ, ଗତି କେତେ ଦୂର ? ଆଦି-ମାନବ କାଠକୁ କାଠରେ ଘଷି, ପଥରକୁ ପଥରରେ ବାଡ଼େଇ ଅଗ୍ନି ବାହାର କଲାଦିନ ମଣିଷଜାତି ପାଖରେ ନିଜକୁ ବିଜ୍ଞାନୀ ବୋଲି ପରିଚୟ ଦେଇନଥିଲା କି ? ଆଜି ସେମିତି ରକେଟ ଯାନ ଆବିଷ୍କାର-କର୍ତ୍ତା ଋଷିଆ ଓ ଆମେରିକା ଭିତରେ ପ୍ରତିଯୋଗିତା ଚାଲିଛି କିଏ ଆଗ ଚନ୍ଦ୍ର ଓ ମଙ୍ଗଳ ଗ୍ରହକୁ ଜୀଅନ୍ତା ମଣିଷ ପଠାଇବ ବୋଲି । ପାଞ୍ଚହଜାର ବର୍ଷପରେ ଏଇ ପୃଥିବୀର ଲୋକେ ଆଜିର ରକେଟ କଥା ଭାବିଲାବେଳକୁ ଆଦି-ମାନବର ଅଗ୍ନି-ଉଦ୍ଭାବନ କୌଶଳ ତୁଲ୍ୟ ନିହାତି ତୁଚ୍ଛ କଥାଟା ବୋଲି ଭାବିବେ ସିନା ?

ହେ ରକେଟ-ନିର୍ମାଣ-ବିଜ୍ଞାନୀ ! ଦେଶଦେଶରେ ମଣିଷ ମାରି ଧ୍ୱଂସ କରିଦେବା ପାଇଁ କ୍ଷୁଦ୍ର ମଣିଷଜାତି ପାଖରେ ତୁ ସିନା ନିଜର କ୍ଷୁଦ୍ରତମ ବିଜ୍ଞାନ-ବିଦ୍ୟାର ବାହାଦୁରି ଦେଖାଇ ପାରୁ,

କିନ୍ତୁ ମହାକାଳର ସେହି ମହାବିଜ୍ଞାନ ନିକଟରେ ତୋର ଜ୍ଞାନର ପରିମାଣ କେତେରେ ? ଚନ୍ଦ୍ର ଓ ମଙ୍ଗଳ—ଗୋଟାଏ ଉପଗ୍ରହ ଓ ଅନ୍ୟଟି ଗ୍ରହ । ଏହିପରି ଆମର ଏ ସୌର ଜଗତରେ କେତେଗୁଡ଼ିଏ ଗ୍ରହ ଉପଗ୍ରହ ଅଛନ୍ତି । ରାତିରେ ନୀଳ ଆକାଶକୁ ଚାହିଁ ଦେଖିଚୁକିରେ ଚଣ୍ଡାଳ ! ଆମ ସୂର୍ଯ୍ୟପରି ଅନନ୍ତ କୋଟି ସୂର୍ଯ୍ୟ ତାଙ୍କ ସୌର ଜଗତ ଗୁଡ଼ିକୁ ନେଇ ବିଦ୍ୟମାନ ଅଛନ୍ତି । କେଉଁ ବିଜ୍ଞାନ ବଳରେ ତୁ ସେଠାକୁ ମଣିଷ ପଠାଇ ପାରିବୁରେ ଅଜ୍ଞାନ ? ଧୀରେ ଧୀରେ କାଳକ୍ରମେ ଅନନ୍ତବିଜ୍ଞାନ ଯେତିକି ସାମାନ୍ୟ ଜ୍ଞାନ ତୋତେ ଯାଚିଦେଉଚି, ସେତିକି ମାତ୍ର ନେଇ ତୁ କହୁଚୁ ବିଜ୍ଞାନ-ବିଜୟୀ କୋଟି-ବ୍ରହ୍ମାଣ୍ଡ-ଜୟକାରୀ ରୂପେ ନିଜକୁ ତୁ ପରିଚୟ ଦେବୁବୋଲି । କିନ୍ତୁ ଜାଣୁକି ତୁ ନିଜେ ଏବଂ ତୋର ସମସ୍ତ ସତ୍ତା ଓ ଜ୍ଞାନ କେତେଦୂର ଗତି କରିପାରେ ? ଏ ବିରାଟ ବିଶ୍ୱର ସତ୍ତା କିଛି ନଥିଲା ଦିନେ । କାହୁଁ ଆସିଲା ବାଷ୍ପୀୟ ମଣ୍ଡଳ, କାଳକ୍ରମେ ଜଳହେଲା, ବୃକ୍ଷଲତା ଜନପ୍ରାଣୀ ଉଦ୍ଭବ ହେଲେ । ନଙ୍ଗଳା ମଣିଷ ସଭ୍ୟହେଲା, ଶିକ୍ଷିତ ହେଲା, ବିଜ୍ଞାନୀ ବୋଲାଇଲା । ଦିନ ଆସିବ ଏ ସ୍ରୋତର ପୁଣି ଗତି ବଦଳିବ । କାଳକ୍ରମେ ଜୀବ ଜଡ଼ ସବୁ ଯିବେ, ସୃଷ୍ଟି ଶୂନ୍ୟ ହେବ, ବିଶ୍ୱ ବ୍ରହ୍ମାଣ୍ଡ ଶୀତଳ ହୋଇଯିବ । ପୁଣି ବାଷ୍ପ ଓ ତା ପଛକୁ ସବୁ ଶୂନଶାନ । ଶୂନ୍ୟରୁ ସବୁ ଉଦ୍ଭୂତ ପୁଣି ଶୂନ୍ୟ ମଣ୍ଡଳରେ ସବୁ ଦିନେ ଲୀନ ହୋଇଯିବ:—

ଜାତସ୍ୟହି ଧ୍ରୁବୋ ମୃତ୍ୟୁ ।

ମଣିଷ ପକ୍ଷେ ଯାହା, ସାରା ସୃଷ୍ଟି ଓ କୋଟି କୋଟି ବ୍ରହ୍ମାଣ୍ଡ ପକ୍ଷେ ସେଇଆ । ଗୋଟାଏ ବିରାଟ ମାୟା, ଗୋଟାଏ ବିରାଟ କ୍ରୀଡ଼ା । କ୍ରୀଡ଼ାକାରୀଟି କିଏ ତାକୁ ଜାଣିବାକୁ ଚିନ୍ତା କରରେ କ୍ଷୁଦ୍ର

ମାନବ ! ତାହାର ଉଦ୍ଦେଶ୍ୟରେ ସମ୍ପୂର୍ଣ୍ଣ ଆତ୍ମ ସମର୍ପଣ କରଦେ । ତେବେରେ ପାଇବୁ ପ୍ରକୃତ ଜ୍ଞାନ ଏବଂ ପ୍ରକୃଷ୍ଟ ବିଜ୍ଞାନ ।

ଅସହାୟା ସର୍ବହରା ଅନୁରାଧାଟିକୁ ବକ୍ଷରେ ଧରି କ୍ଷୁଦ୍ର ନୌକା ଖଣ୍ଡିକ ସମୁଦ୍ର ଅଭିମୁଖେ ଖରବେଗରେ ଗତିକରି ଚାଲିଛି । ନୌକା ଉପରେ ନିତାନ୍ତ ନିର୍ଜୀବ ପରି ବସି ବସି ଭାବୁ ହେଉଛି ଅନୁରାଧା—"ବୋଉ ଗଲା, ଘର ଦ୍ୱାର ଗଲା, ନାନୀ କୁଆଡ଼େ ରହିଲେ । ନରୁ ଭାଇନା ଓ ପଦ୍ମବାସିନୀଙ୍କ କଥା ମନେ ପଡ଼ିଲା ବେଳକୁ ଏ ଜୀବନର ବହୁବିଧ ଅଭିଜ୍ଞତା ମଧ୍ୟରେ ସେମାନଙ୍କ ଚିନ୍ତା ଦିନକର ସ୍ୱପ୍ନପରି ଲାଗେ ସିନା । ଶେଷକୁ ଆଉ ରାତିରେ ବୃଦ୍ଧ ପିତା ଅଳ୍ପ ସମୟ ଦେଖା ଦେଇ ବିଦାୟ ନେଇ ଗଲେ । 'ଝିଅ ଥା ମୁଁ ଚାଲିଲି' ବୋଲି ପଦେ ଦିପଦ କହି ଯିବାକୁ ମଧ୍ୟ ସମୟ ପାଇଲେ ନାହିଁ । ଜନ୍ମ ଜୀବନ ଓ ମରଣ ଗୋଟାଏ ଲେଖା ଦୁର୍ଘଟଣା ମାତ୍ର । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଜଣକୁ ବିଶ୍ଳେଷଣ କଲେ ମନେହୁଏ ସତେକି ଗୋଟାଏ ମିଥ୍ୟାର ସ୍ୱପ୍ନ ଛବି । ଭେଲକି ଓ ଭେଳକିବାଜି ମାତ୍ର । କେଳାର କୁହୁକ ମାତ୍ର । ସବୁ ମିଥ୍ୟା, ସବୁ ଅସତ୍ୟ ।

× × × ×

ତଥାପି ମଣିଷ ନିଜ ନିଜ ପାଇଁ ସୁଖର ସଂସାର ଗଢ଼ି ବାକୁ ଯତ୍ପରୋନାସ୍ତି ଚେଷ୍ଟା କରୁଛି । ଅହରହ ଲାଗି ପଡ଼ିଛି, ଧାଁ ଦୌଡ଼ କରୁଛି । ପଦ୍ମବାସିନୀ ଲାଗିପଡ଼ିଛନ୍ତି କେମିତି ତାଙ୍କ ପୁଅଟି ବାହାହେବ, ସଂସାର କରିବ । ଜୋସ୍ନାକି ବୋହୂ ହୋଇ ତାଙ୍କ ଘରକୁ ଆସିବ । ବିନୋଦିନୀ ଭାବୁଛନ୍ତି କେମିତି ତାଙ୍କ ବଡ ଝିଅଟି ଭଲ ଘରକୁ ଯିବ । ନରୋତ୍ତମଟି ଜ୍ୱାଇଁ ହେବ । ପଦ୍ମବାସିନୀ ସମୁଦୁଣୀ ହେବେ । ଆଉ ବାକି ରହିଲା ଦୁଇଟି ମାତ୍ର ମାସ ।

ହସି ହସି ପଶିଆସୁଛି ନରୋତ୍ତମ । ହସି ହସି ଆଗେଇ ଯାଉଛି ଜ୍ୟୋତ୍ସ୍ନାରାଣୀ ସ୍ୱାଗତ ଜଣାଇ ତାକୁ ଆଣିବା ପାଇଁ । ସେ ଜାଣିଛି ଦୁଇଟି ମାସ ପରେ ସେ ଆଉ ନରୋତ୍ତମ ଏକ ହେବେ । ମାର୍ଗଶିର ପ୍ରଥମ ତିଥିରେ ବାହା । ତଥାପି ସେ ପୂର୍ବପରି ଡାକୁଛି— ନରୁଭାଇନା ଆଜି ମୋର ସୁପ୍ରଭାତ । ବିନା ଡାକରାରେ ପ୍ରଭୁ ଆସି ଛୁଏଁ ଛୁଏଁ ଦେଖା ଦେଉଛନ୍ତି ।

"ପ୍ରଭୁ" ! ଚମକି ପଡ଼ୁଛି ନରୋତ୍ତମର ଛାତି ଭିତରଟା । ଥମକି ଛିଡ଼ା ହୋଇ ଯାଉଛି ସେ ଦୁଆର ମୁହଁରେ । ଘରଭିତରେ ଜ୍ୟୋତ୍ସ୍ନା ଏକୁଟିଆ । "ପ୍ରଭୁ" ଆଉ "ଭୃତ୍ୟ" ! ଏ ତ ଦାସ୍ୟଭାବ ! ଏ ଦେଶ ମାଟିରେ ସ୍ୱାମୀ ଦେବତା ଏବଂ ସ୍ତ୍ରୀ ତାର ଭୃତ୍ୟ ମାତ୍ର । ସେବା ଦାସୀ ! ମଧୁର ଭାବର ପରିଚୟ ତ ଏଥିରୁ ମିଳେ ନାହିଁ । ପୂର୍ଣ୍ଣପ୍ରାଣରେ ଆତ୍ମସମର୍ପଣ, ମିଶିମାଶି ଏକ ହୋଇଯିବା । ନିଜକୁ ଅନ୍ୟ ଭିତରେ ଦେଖିବା, ଅନ୍ୟକୁ ଆପଣା ଭିତରେ ପାଇବା । ସେହି ପୂର୍ଣ୍ଣପ୍ରାଣ ଅବଚେତନତା ଓ ସଚେତନ ଏକପ୍ରାଣତା କାହିଁ ଏଥିରେ ?

ନରୁ ଚମକି ଠିଆହୋଇ ଯାଉଛି । ଗମ୍ଭୀର ହୋଇ ଯାଉଛି ମୁଖମଣ୍ଡଳ ତାର । ଭିତରକୁ ପଶୁ ନାହିଁ ।

ଥକ୍କା ହୋଇ ଚାହିଁରହୁଛି ଜ୍ୟୋତ୍ସ୍ନା ତାହାର ଆଡ଼କୁ ! ଡାକୁଛି—'ଆସ ଭାଇନା, ଗୋଟାଏ କଥା କହିବି' । ଡ଼ାକ ଭିତରେ ପରିବର୍ତ୍ତନ "ପ୍ରଭୁ" ସ୍ଥାନରେ "ଭାଇନାଙ୍କ" ଆବିର୍ଭାବ । କିନ୍ତୁ "ଗୋଟିଏ କଥା କହିବି" ଭିତରେ ସନ୍ଦେହ ଓ ରହସ୍ୟ ଲୁଚି ରହୁଛି । ଗୋଟିଏ ଗୋଡ଼ ଉଠାଉଛି, ଭିତରକୁ ପକାଇବାକୁ, ମାତ୍ର ଆଉ ଗୋଡ଼ଟା ଟାଣିହୋଇ ରହୁଛି ପଛକୁ ।

"ଆସ, ବସ, ମୁଁ ଟିକେ ଭିତରୁ ଆସୁଚି" ।

ଜ୍ୟୋସ୍ନା ଚୌକିଟା ଦେଖାଇଦେଇ ବସିବାକୁ କହି ଭିତରକୁ ଚାଲିଗଲା । ହଁ ନାହିଁ, ନାହିଁ ହଁ ହୋଇ ହୋଇ ନରୋତ୍ତମ ଭିତରକୁ ଯାଇ ଚୌକି ଖଣ୍ଡିକ ଉପରେ ବସିପଡ଼ିଲା । ଆଗରେ ଟେବୁଲ ଉପରେ ଖବର-କାଗଜ ପଡ଼ିଚି । ଘରଭିତରେ କାହାର ସାଡ଼ିଶବ୍ଦ ଶୁଭୁନାହିଁ । ଖବର କାଗଜଟି ଧରି ପଢ଼ିବାକୁ ଆରମ୍ଭକଲା । ଶୂନ୍ୟ ଘରଟି ଶୂନ୍ୟ ଲାଗୁଚି । କିନ୍ତୁ ଅଗଣା ଭିତରକୁ ଯାଇ ଜ୍ୟୋସ୍ନାକୁ ଡାକି ଆଣିବାକୁ ମନ ବଳୁନାହିଁ । ମୋତି ଓ ବାବୁଲି କେହି ଆଜି ଘରେ ନାହାନ୍ତି ।

ଟ୍ରେରେ ଗରମ ଗରମ କପେ ଚାହା ଏବଂ ଚିନା ଥାଳିଆରେ କିଛି ମିଠା ଜଳଖିଆ ଆଣି ଜ୍ୟୋସ୍ନା ଟେବୁଲ ଉପରେ ଥୋଇଲା । ହସ ହସ ମୁହଁରେ ପାଖରେ ଥିବା ଅନ୍ୟ ଚୌକି ଖଣ୍ଡିକରେ ବସିବାପାଇଁ ଉଦ୍ୟତ ହୋଇ ଠିଆ ହୋଇ ରହିଲା ।

ଜଳଖିଆ ପ୍ଲେଟରୁ ଗୋଟାଏ ସନ୍ଦେସ ପାଟିରେ ପକାଇ ଚା କପଟାକୁ ଓଠ ପାଖକୁ ଟେକି ଧଇଲା ନରୋତ୍ତମ । କହିଲା—କଅଣ ଏତିକ ନା ଆଉ କିଛି ?

ମୃଦୁ ମୃଦୁ ହସୁଚି ନରୋତ୍ତମ ।

ମୃଦୁ ମୃଦୁ ହସୁଥାଏ ଜ୍ୟୋସ୍ନା । ଧୀରେ ଧୀରେ ଚୌକି ଖଣ୍ଡିକ ଉପରକୁ ବସିପଡ଼ି ବାଁ ହାତରେ ଧରିଥିବା ଗଣ୍ଡେ ଲଫାଫା ଚିଠି ଦୂରକୁ ଧରି ଦେଖାଇ କହିଲା—ନାଇଁ ନାଇଁ, ସେତିକି ନୁହେଁ । ସେତକ ସାଇଲେ ଏତକ ଦେବ । ବୋଉଙ୍କ ଶେଯ ତଳୁ ଗୋଟିକର ଆଣିଚି ।

ସେମିତି ଅଳ୍ପ ଅଳ୍ପ ହସୁ ହସୁ ଚା’ଟିକ ପାଟିକି ନେଲା ନରୋତ୍ତମ । ପଚାରି ଦେଲା—କିଏ କରିଚି ଚାଆଟା ?

"ମୁଁ କରିଚି" ।

"ଏତେ ଶୀଘ୍ର" ?

"ହିଟରରେ କରି ଆଣିଲି" ।

"ସୁନ୍ଦର ହୋଇଚି, ଗୃହବିଜ୍ଞାନରେ ତୋତେ ମୁଁ ଶହେରୁ ଅଶୀନମ୍ବର ନିଶ୍ଚୟ ଦେବି" ।

"ଅଶୀ, ଆଉ ବେଶି ହେବ ନାହିଁ" ?

"ଦେଇ ପାରିବି ନାହିଁ"—

କହୁ କହୁ ମୁହଁଟିକୁ କୃତ୍ରିମ ଛଳରେ ବିକୃତ କରିନେଲା ନରୋତ୍ତମ ।

ପଛକୁ ତଳପଡ଼ି ଉପରଆଡ଼କୁ ଦୃଷ୍ଟି ନିକ୍ଷେପ କରି କହିଉଠିଲା ଜ୍ୟୋତ୍ସ୍ନା—"ତେବେ ବେଶ୍ । ସେତିକି ପାଇଲେ ମୁଁ ଖୁସି । ମୁଁ ଆଶା କରୁଥିଲି ଫେଲ ହେବି ବୋଲି" ।

"ନା, ନା, ଫେଲଟା ହବୁନାହିଁ । ପାସ କରିବୁ ଏବଂ ଭଲ ନମ୍ବର ରଖି । କିନ୍ତୁ ଚିଠିଟା ଦେଇଚି କିଏ ? ମୋ ସହିତ ସମ୍ବନ୍ଧଟା କଅଣ କେତେଦୂର" ?

"କହିବି ନାହିଁ । ନିଜେ ପଢ଼ିଲେ ଜାଣିବ" ।

ଆଗ ବଳି କହି ଉଠିଲା—ଦେଖ ଜ୍ୟୋତ୍ସ୍ନା ! ମୋତେ କିଛି ଆଗତ ଭବିଷ୍ୟତ ବିଦ୍ୟା ମାଲୁମ ଅଛି । ଚିଠିଟା ଦେଇଚନ୍ତି ବୋଉ, ଦେଇଚନ୍ତି ମାଉସୀଙ୍କ ପାଖକୁ । ଲେଖିଚନ୍ତି ବିବାହ କଥା, ମାର୍ଗଶିର ମାସକୁ ସେମାନେ ସ୍ଥିର କରୁଚନ୍ତି ଆଉ—

"ସେତିକି ଥାଉ । ସବୁ ତୁମେ ଜାଣିଚ । ଆଉ ହେଲା— ତୁମର ଓ ମୋ ଭିତରେ"— ।

ଟେବୁଲ ଉପରକୁ ଢଳି ପଡ଼ି କହୁଣୀ ଦିଟାକୁ ରଖି ହାତପାପୁଲି ଦିଇଟାରେ ଚିବୁକ ଥୋଇ ଜ୍ୟୋତ୍ସ୍ନା ଆଡ଼କୁ ଆଖି ଫେରାଇ ମୃଦୁ ମୃଦୁ ହସି ନରୋତ୍ତମ ଧୀରସ୍ୱରରେ କହିଉଠିଲା—ତୁମର ଆଉ ମୋ ଭିତରେ ସମ୍ବନ୍ଧଟା ସ୍ଥିର ହେଉଚି । ମାତ୍ର ତୁମେ ଜାଣ ନାହିଁ କି ମୁଁ ସମ୍ମତି ଦେଇନାହିଁ । ସେମାନେ ସମ୍ବନ୍ଧଟା ଏବଂ ଦିନଟା ମଧ୍ୟ ଏକ ପ୍ରକାର ଠିକ୍ କରିନେଇ ସାରିଚନ୍ତି । ମାତ୍ର ବିବାହଟା କରିବ ମୁଁ ।

ଶୁଖିଲା ମୁହଁରେ ଆଗକୁ ଢଳି ଆସି ଅତି ଚକିତ ଓ ବିବ୍ରତ ଭାବରେ ପଚାରିଲା ଜ୍ୟୋତ୍ସ୍ନା—କିନ୍ତୁ ସେମାନେ ହେଲେ ଗୁରୁଜନ । ସେମାନେ ଯେ ସବୁ କଥା ଠିକ୍‌ଠାକ୍ କରି ସାରିଲେଣି ! ବାପାତ ଏ ସମ୍ବନ୍ଧରେ ମହା ଖୁସୀ । ଆଉ ମୁଁ ? ମୁଁତ ଅନେକଦିନୁ ମାଉସୀଙ୍କ କଥା ଓ ତମ ଘର କଥା ଶୁଣି ଶୁଣି ମନେ ମନେ ତୁମକୁ—

ପଛକୁ ଢଳିପଡ଼ି ଅନ୍ୟ ଆଡ଼କୁ ଆଖି ଫେରାଇ ନେଇ ବାକ୍ୟଟିକୁ କହିଉଠିଲା ନରୋତ୍ତମ—'ବରଣମାଳା ଦେଇ ସାରିଚ' । ହାୟ ହାୟ, ଇଏଟା ଭାରତ ଇତିହାସର ସଂଯୁକ୍ତା ପୃଥ୍ୱୀରାଜ କଥା ପରି ହେଲା । କିନ୍ତୁ ଜ୍ୟୋତ୍ସ୍ନା ?

ଜ୍ୟୋତ୍ସ୍ନା କହିବାକୁ ଆରମ୍ଭ କଲା—କିନ୍ତୁ ଫିନ୍ତୁ କିଚ୍ଛି ମୁଁ ଶୁଣି ପାରିବିନାହିଁ । ମୁଁ ତମକୁ ଭଲପାଇ ସାରିଚ୍ଛି, ନରୁଭାଇନା !

"ଭୁଲ କରୁଚ ଜ୍ୟୋତ୍ସ୍ନା" ।

"ଭୁଲ ? ମୁଁ ଭୁଲ କରିଚି" ?

“ଭୁଲ କରିପକାଇଛୁ । ଏଥିରେ ମୁଁ ସମ୍ମତ ହୋଇ ପାରୁନାହିଁ । ପାରୁତ କ୍ଷମା ଦେ । ବିବାହ କରିବି ନାହିଁ ବୋଲି ଆପାତତଃ ମୁଁ ସ୍ଥିର କରିଛି । ବି. ଏ. ଟା ପାସ କରି ନିଜଗୋଡ଼ରେ ଛିଡ଼ା ହୋଇସାରିଲେ ହୁଏତ ପୁଣି ଥରେ ସେ ବିଷୟ ଭାବିବି ଏବଂ ହଁ କି ନାହିଁ ଠିକ୍ କରିବି । ପାରୁତ ମାଉସୀଙ୍କି ଏ କଥାଟା ତୁ କହି ଦେବୁ ଏବଂ ସେ ତୋ ପାଇଁ ଅନ୍ୟ ବ୍ୟବସ୍ଥା କରିବେ । ବୋଉ ମନେ ଜଣାଇଲେ ମୁଁ ତାଙ୍କୁ କହିଦେବି । ମାର୍ଗଶିର ମାସ ବେଳକୁ ମୁଁ ଓଡ଼ିଶା ବାହାରକୁ ଯାଇଥିବି । ମୁଁ ଏବଂ ଜଣେ ସାଙ୍ଗ ସ୍ଥିର କରିଛୁ ଦିଟା ମଟର ସାଇକଲରେ ଆମେ ଦିଲ୍ଲୀଯାକେ ବୁଲି ଯିବୁ” ।

ଆଖି ଦିଇଟାକୁ ଛଳ ଛଳ କରି ଆଣିଲା ଜ୍ୟୋତ୍ସ୍ନା । ଏତେ ବଡ଼ ଧକ୍କାଟାଏ ନରୋତ୍ତମ ଠାରୁ ପାଇବ ବୋଲି ସେ ଆଶା କରିନଥିଲା । ଶିକ୍ଷିତା ଝିଅ । କୌଣସି ପ୍ରକାରେ ଆପଣାକୁ ସମ୍ଭାଳି ନେଇ ଭିତରର ଦୁର୍ବଳତାକୁ ହସରେ ଉଡ଼ାଇ ଦେବାକୁ ଚେଷ୍ଟାକରି କହି ଉଠିଲା—

“ଏକଦମ ଦିଲ୍ଲୀ ଚଲେ” ?

ହସି ହସି ନରୋତ୍ତମ ଉତ୍ତର ଦେଲା—

“ଦିଲ୍ଲୀ ଚଲେ” ।

ଜ୍ୟୋତ୍ସ୍ନା ଘନ ଘନ ନିଃଶ୍ୱାସ ମାରୁଛି, ଏବଂ ଥକ୍କା ହୋଇ ପଛକୁ ଆଉଜି ପଡ଼ୁଛି । ମୁହଁଟା ହଠାତ୍ ଝାଉଁଳି ପଡ଼ିଛି ଏବଂ ଧରିଥିବା ଚିଠିଖଣ୍ଡିକ ହାତରୁ ତଳକୁ ଖସିପଡ଼ିଛି । ନୀରବ, ନିଶ୍ଚଳ, ନିସ୍ତେଜ ଭାବରେ ଜଡ଼ପିଣ୍ଡପରି ପଡ଼ି ରହିଛି ମାତ୍ର । ନରୋତ୍ତମ ତାହାର ଆଡ଼କୁ ଏକଲକ୍ଷ୍ୟରେ ଚାହିଁରହି କହିଉଠିଲା—“ଜ୍ୟୋତ୍ସ୍ନା !

ତୁ ଏତେ ଦୁର୍ବଳ ? ମଣିଷ ଜୀବନରେ ବିବାହଟା ଗୋଟାଏ ନିହାତି ମାମୁଲି କଥା । ବିଲେଇ କୁକୁର ପରି ଗୁଡ଼ାଏ ଛୁଆ ଜନ୍ମ କରିବା ପାଇଁ ସମାଜର ବୈଧାନିକ ଉପାୟ ଗୋଟାଏ । ଗୋଟିଏ କଥା କହିବି ଜ୍ୟୋତ୍ସ୍ନା, ସହି ପାରିବୁ ତ ?"

ଧୀର ସ୍ୱରରେ ଉତ୍ତର ଦେଲି ଜ୍ୟୋତ୍ସ୍ନା—"କଅଣ କୁହ । କଥାଟାକୁ ସମ୍ଭାଳିବ ନାହିଁ କାହିଁକି" ?

"ସେଇ କଥା ଭାବୁଥିଲି—ସମ୍ଭାଳି ପାରିବୁ କି ନାହିଁ । ଏତିକରେ ତ ଏତେ ଦୁର୍ବଳ ହୋଇ ପଡ଼ିଲୁ । ସେ କଥାଟା ତ ବଜ୍ରବାଟୁଳି" ।

"ବଜ୍ରବାଟୁଳି ? କଅଣ କୁହ । ସବୁ କଥାତ କହି ପକାଇଲ, ଏତିକ ଆଉ ବାକୀ ରଖିବ କାହିଁକି ? କହି ପକାଅ । ସବୁ ଅସ୍ତ୍ରକୁ ପ୍ରୟୋଗ କରିପକାଅ ନରୋତ୍ତମ ବାବୁ" !

"ସବୁ ଅସ୍ତ୍ର, ନରୋତ୍ତମ ବାବୁ" । ଖୁବ୍ ବେଶୀ ଉତ୍ତେଜିତ ହୋଇ ଉଠିଛି ଜ୍ୟୋତ୍ସ୍ନା । ପାଇବା ଜିନିଷ ସବୁ ହଠାତ୍ ହରାଇଛି । ଧରିବା ଜିନିଷ ହାତରୁ ଖସି ଯାଇଛି । ନାରୀର ଶେଷ ଅସ୍ତ୍ର "ଅଭିମାନ", ତାକୁ ବି ସେ ପରଖି ନେବାକୁ ଚାହେଁ ।

"କହିବ ଜ୍ୟୋତ୍ସ୍ନା ? କହିଦେବି" ?

"କୁହ । ବାକି ରଖୁଚ କାହିଁକି" ?

ନରୋତ୍ତମ ବୁଝୁଚି—ଏତିକ ଜ୍ୟୋତ୍ସ୍ନାର ଛଳନା ମାତ୍ର । ତଥାପି ସେ କହି ପକାଇଲା—

"ସତ କଥାଟି ହେଉଚି ଜ୍ୟୋତ୍ସ୍ନା, ଭଲ ପାଇବା ଶବ୍ଦଟା ତୁ ଶୁଣିଚୁ । କିନ୍ତୁ ଭଲ ପାଇବାଟା କଅଣ ତା ଜାଣୁନା । ଆଜିକାଲିର

ଝିଅ ପୁଅ କଥାକଥାକେ ଭଲପାଇବା କଥାଟାକୁ ଉଚ୍ଚାରଣ କରି ଥାଆନ୍ତି । କିନ୍ତୁ ଭଲ ପାଇବା ଯୋଗର ସାଧନ ବିଷୟରେ କିଛିମାତ୍ର ତାଙ୍କୁ ମାଲୁମ ନାହିଁ । ମାଆ ପୁଅକୁ ଭଲପାଏ, ବାପ ପିଲାଙ୍କୁ ଭଲ ପାଏ । ମାତ୍ର ସେମାନେ 'ଭଲପାଏ' ବା 'ଭଲପାଇଲି' ବୋଲି କହି ହୁଅନ୍ତି ନାହିଁ । ସେମାନେ ତ୍ୟାଗ କରନ୍ତି । ପିଲାଙ୍କ ପାଇଁ ଆତ୍ମବଳି ଦିଅନ୍ତି । ନିଜ ପାଟିରୁ ଛଡ଼ାଇ ଛୁଆଙ୍କୁ ଖୁଆନ୍ତି । ଶୀତକାକର ଆଡ଼କୁ ନିଜର ମୁକୁଳା ପିଠିଟିକି ରଖି ପିଲାଙ୍କୁ କୋଳରେ ପୂରାଇ ନିଜର ଉଷ୍ମତାକୁ ସମର୍ପଣ କରନ୍ତି । ଭଲ ପାଇବା ଗୋଟାଏ ସାଧନା, ଗୋଟାଏ ଯୋଗ । ଭଲ ପାଇବା ତୁଣ୍ଡର କଥା ନୁହେଁ ଜ୍ୟୋତ୍ସ୍ନା" ?

ଗମ୍ଭୀର ହୋଇ ବସିରହି ଦୀର୍ଘନିଃଶ୍ୱାସ ଟାଣୁଚି ଜ୍ୟୋତ୍ସ୍ନା । ଘନ ଘନ ଶ୍ୱାସପ୍ରଶ୍ୱାସରେ ଛାତିଟା ତାର ଉଠୁଚି ପଡ଼ୁଚି । ନରୋତ୍ତମ ତା ଆଡ଼କୁ ଚାହୁଁ ନାହିଁ । ହସି ହସି କହି ଚାଲିଚି ।

"ପିଲା-ମନ ତୋର । ଆମ ଘରର ଧନସମ୍ପଦ, ଆମର ଖାନଦାନ ଏବଂ ମୋ ବୋଉଙ୍କ ଗୁଣ ଗରିମା କଥା ଶୁଣି ଶୁଣି ଆମଘର ପ୍ରତି ତୋ ମନଟା ଆକୃଷ୍ଟ ହୋଇଚି । ଏଇଟା ଯୌବନଭରା ଝିଅପିଲା ମାନେ ପ୍ରତ୍ୟେକଙ୍କ ପକ୍ଷେ ସ୍ୱାଭାବିକ । ଆମ ଘରକୁ ଗଲେ ତୁ ସୁଖରେ ରହିବୁ ଏଇତୋ ମନର ବାଞ୍ଛା । ମାତ୍ର ସିବାଲାଗି ବାଟଟାଏ ଲୋଡ଼ା । ବାଟଟା ହେଲା ମୋତେ ବିବାହ କରିବା । ତେଣୁ ତୁ ମୋତେ ଭଲ ପାଇଲୁ । ମାତ୍ର ମୁଖ୍ୟ ଉଦ୍ଦେଶ୍ୟ ତୋର ମୋତେ ଭଲପାଇବା ନୁହେଁ ନିଶ୍ଚୟ ଜ୍ୟୋତ୍ସ୍ନା । ଆମ ଘରକୁ ଗଲେ ତୁ ସୁଖରେ ରହିବୁ—ଏଇଟା ହେଲା ମୁଖ୍ୟ କାମନା । ମୋତେ ଭଲପାଉ ବୋଲି କହୁଚୁ । ଧର ନିଆଯାଉ ମୁଁ ଅତିଦରିଦ୍ର, ଦାଣ୍ଡର

ଭିକାରୀ । ମୋର ଘର ନାହିଁ, ଦ୍ୱାର ନାହିଁ । ସତକରି କହ, ତୁ ମତେ ଭଲ ପାଇ ଥାଆନ୍ତୁ କି" ?

ମନଭିତରେ ଗୋଟିଏ ଧଡ଼ପଡ଼ ଯାଇଛି । ଜ୍ୟୋତ୍ସ୍ନା ତଳ ପଡ଼ିଛି ନଇଁଆଡ଼କୁ । ଫଁ ଫଁ ନିଶ୍ୱାସ ଛାଡ଼ୁଛି । ଉତ୍ତର କିଛି ଦେଇ ପାରୁନାହିଁ । ତୀବ୍ର ଆଘାତ ଦେଲା ଆଜି ନରୋତ୍ତମ । ନିଗୁଢ଼ ସତକଥାଟା କହିଦେଲା । ବାକଶକ୍ତି ହରାଇ ଜ୍ୟୋତ୍ସ୍ନା ମର୍ମେ ମର୍ମେ ଶତବୃଶ୍ଚିକର ଦଂଶନ ଜ୍ୱାଳା ଅନୁଭବ କରୁଛି ।

ହସି ହସି ଧୀରେ ଧୀରେ ଉଠି ଠିଆ ହେଲା ନରୋତ୍ତମ । ଜ୍ୟୋତ୍ସ୍ନା ଆଡ଼କୁ ଆଡେଇ ଚାହିଁ କହିଲା—"ଅବଶ୍ୟ ମୁଁ ଆଜି ବଡ଼ ଜୋର ଆଘାତଟା ଦେଲି—ସେଇଟା ଠିକ ହୋଇନାହିଁ । କ୍ଷମା ମୋତେ ଦେବାକୁ ହିଁ ହେବ ତୋତେ । ମାତ୍ର ଆଶାପୂର୍ଣ୍ଣ ପାଗଳ ମନକୁ ତୋର ବୃଥାରେ ଅଧିକ ଦୂର ଆଗେଇ ଯିବା ପାଇଁ ସୁବିଧା ଦେବାକୁ ମୁଁ ଚାହେଁ ନାହିଁ । ଏତିକି ଦୂରରୁ ଫେରିପଡ଼ ଜ୍ୟୋତ୍ସ୍ନା । ନଗାଧିରାଜତନୟା ପାର୍ବତୀ ଶିବଙ୍କର ଧନ ସମ୍ପଦ ଦେଖି ଆଶାପୂର୍ଣ୍ଣ ହୋଇ ବଣକୁ ଦୌଡ଼ି ଯାଇ ନଥିଲେ । ଦିଗମ୍ବର, ନିଃସ୍ୱ, ଭସ୍ମବିଲେପିତ—ଶରୀର ସର୍ପ ବିଭୂଷିତ ଶ୍ମଶାନବାସୀ ଶିବଙ୍କୁ ଏକାଗ୍ର ଚିତ୍ତରେ ଯଥାର୍ଥ ଭାବେ ଭଲ ପାଇ ବନଗାମିନୀ ହୋଇଥିଲେ ପାର୍ବତୀ । ତାକୁଇ କହନ୍ତି ପ୍ରକୃତ ଭଲପାଇବା । ତାକୁଇ କହନ୍ତି ବିଶୁଦ୍ଧ ସ୍ନେହ । କିଛିଦିନ ଭାବି ଦେଖିବୁ ଜ୍ୟୋତ୍ସ୍ନା—ନିଜର ମନଭିତରଟାକୁ ଭଲଭାବରେ ବିଶ୍ଳେଷଣ କରି ଦେଖ । ହନୁମାନ ରାମସୀତାଙ୍କୁ ଭକ୍ତି କରୁଥିଲା । ଛାତି ଚିରି ଦେଖାଇ ଦେଲା, ହୃଦଯନ୍ତ୍ରର ପ୍ରତ୍ୟେକ କମ୍ପନରେ ଧ୍ୱନିତ ହେଉଛି—ଗୋଟିଏ ମାତ୍ର ଯୁଗ୍ମନାମ ସୀତାରାମ, ସୀତାରାମ । କୃଷ୍ଣଙ୍କୁ ପାଇବା ଲାଗି ରାଧା ପାଗଳିନୀ ହୋଇ

ଯାଉଥିଲେ । ପାଇ ପାରିଲେ ନାହିଁ । କାନ୍ଦ କାନ୍ଦ ସାରା ଜୀବନ କଟାଇ ଦେଲେ । ମିଳନଟା ଭଲ ପାଇବାର ପ୍ରମାଣ ଦିଏ ନାହିଁ ଜ୍ୟୋସ୍ନା, ଯଥାର୍ଥ ପ୍ରେମ ଓ ପ୍ରଣୟ ହେଲା ବାଷ୍ପାକୁଳ ପ୍ରାଣର ଉଚ୍ଛ୍ୱସିତ କ୍ରନ୍ଦନ" ।

ହସି ହସି ଧୀରେ ଧୀରେ ବାହାରକୁ ପାଦ ବଢ଼ାଇଲା ନରୋତ୍ତମ । ପଥର ପ୍ରତିମାଟି ପରି ଏକ ଲୟରେ ଶୂନ୍ୟ ଗୃହଆଡ଼େ ଅନାଇ ରହି ଗୋଟିଏ ଗୋଟିଏ ଉଷ୍ମଶ୍ୱାସ ଟାଣିବାକୁ ଲାଗିଲା— ଜ୍ୟୋସ୍ନା । ପାହାଚ ଉପରକୁ ଗଡ଼ୁ ଗଡ଼ୁ ନରୋତ୍ତମ କହିଗଲା—"ଆଜି କାଲି ସଭ୍ୟ ଶିକ୍ଷିତ ଘରେ ବାପ ମାଆଙ୍କ ଇଙ୍ଗିତରେ ବିବାହ-ଯୋଗ୍ୟା ଝିଅ ଗୃହା ଜଳଖିଆ ଆଣି ଥୁଏ ଭାବୀ ପାତ୍ରର ଟେବୁଲ ଉପରେ । ତା ସଙ୍ଗରେ ସିନେମା ଥିଏଟର ଦେଖିବାକୁ ଛାଡ଼ିଦେବେ ବାପ ମାଆ, ଏକୁଟିଆ ବସି ଦିଜଣ ଗପସପ କରିବେ । ଦୁହିଁଙ୍କ ମଧ୍ୟରେ ଅବାଧ ମିଳାମିଶାର ସୁଯୋଗ ମିଳିବ । ଝିଅ ଗୀତ ଗାଇବ, ନାଚିବ, ଏସବୁ ହେଲା ନିହାତି ମାମୁଲି କଥା, ପାତ୍ର-ଆକର୍ଷଣର ଫନ୍ଦ । ପାଶ୍ଚାତ୍ୟ ପ୍ରଥାର ଅନୁକରଣ ମାତ୍ର । ଏଥିରେ ଯଥାର୍ଥ ଆନ୍ତରିକତା ନଥାଏ । କିନ୍ତୁ ମୁଁ ତାକୁ ମୋଟେ ପସନ୍ଦ କରିପାରେ ନାହିଁ । ଆମ ଦେଶର ଆଦର୍ଶ ହେଲେ ସାବିତ୍ରୀ" ।

ତୀବ୍ର କୁଠାରାଘାତ ପଡ଼ିଲା । ନରୋତ୍ତମ ଚାଲିଗଲା, ଏବଂ ଜ୍ୟୋସ୍ନା ବସିବା ଆସନରେ ପଥର ପାଲଟି ଗଲା ।

---

## ଚଉଦ

ଚକଆ ଉପରେ ମୁହଁମାଡ଼ି ପଡ଼ି ଜ୍ୟୋତ୍ସ୍ନା କାନ୍ଦୁଛି । ବିନୋଦିନୀ ସବୁକଥା ଜାଣିଲେ । ନବୀନବାବୁ ଜାଣିଲେ । କହିଲେ—ହଃ, ମୋ ଝିଅଟାକୁ ବରପାତ୍ର ମିଳିବ ନାହିଁ ?

ପଦ୍ମବାସିନୀଙ୍କ ପାଖକୁ ଚିଠି ଲେଖି ଶେଷ ଚେଷ୍ଟା କରିବାକୁ ଛାଡ଼ିଲେ ନାହିଁ ବିନୋଦିନୀ । ପଦ୍ମା ଚିଠି ପାଇ ପଥର ପାଲଟିଗଲେ । ଭାବିଲେ—ପୁଅର ମନଟା ତେବେ କଅଣ ? ଏତେ ମିଳାମିଶା ସତ୍ତ୍ୱେ ଯୁବକ-ସୁଲଭ ଚଞ୍ଚଳ ମନ ତାର ଆକୃଷ୍ଟ ହେଲନାହିଁ ?

ନରୋତ୍ତମ ତାଙ୍କ ଘର ଆଡ଼େ ଆଉ ଗଲା ନାହିଁ । କେହିବି ଡ଼ାକିବାକୁ ଆସିଲେ ନାହିଁ । ଇଞ୍ଜିନିୟରଙ୍କ ହାକମୀ ମନ ଅପମାନିତ ହୋଇଛି । ବିନୋଦିନୀଙ୍କ ଇଚ୍ଛା ବିରୁଦ୍ଧରେ ନରୋତ୍ତମ କୁଠାରାଘାତ କରିଛି । ଏ ଘରର ସାନ ବଡ଼ ଅନ୍ୟ ପିଲା ଯୋଡ଼ିକ ମଧ୍ୟ ଉତ୍ୟକ୍ତ ହୋଇ ଉଠିଚନ୍ତି । ନରୋତ୍ତମ ମନେ ମନେ ହସି ଉଠୁଛି—ଯାହାହେଉ ଏତିକିରେ ସେମାନଙ୍କ ଆନ୍ତରିକ ସ୍ନେହର ପରିଚୟ ମିଳିଗଲା । ବାସ୍ତବିକ ସେମାନେ ଭଲ ପାଉ ନଥିଲେ । ଗୋଟାଏ ବଡ ମାଛକୁ ଧରିବାପାଇଁ ଜାଲ ପକାଇଥିଲେ ମାତ୍ର । ମାଛଟା କିନ୍ତୁ ଧରା ନପଡ଼ି ଖସି ପଳାଇ ଗଲା, ଏଇଟା ହିଁ ହେଲା ଦୁଃଖର ବିଷୟ ।

ବୋଉଙ୍କ ପାଖରୁ ଖବରପେନ ଗୁମାସ୍ତାଏ ଆସିଲେ । ବାବୁଙ୍କ ମନକଥା ଜାଣି ଘରକୁ ଫେରଗଲେ, ବବାହ ପ୍ରସ୍ତାବ ଭାଙ୍ଗିଗଲା । ନରୋତ୍ତମ ସାଙ୍ଗଟିଙ୍କ ଧର ମଟରସାଇକଲରେ ମାର୍ଗଶିର ମାସରେ ଦିଲ୍ଲୀ ଗ୍ଳଲଗଲା । କୁଳଦେବତା ଚଣ୍ଡେଶ୍ୱରୀଙ୍କ ନକଟରେ ମୁଣ୍ଡିଆ ମାର ପଦ୍ମବାସିନୀ ଜଣାଇଲେ—"ମାଆ ଗୋ, ତୁ କଣ୍ଟ ଗୋଟାଏ ବନ୍ଦୋବସ୍ତ କର । ମୁଁ ଆଉ ପାରବ ନାହିଁ । ପୁଅର ମନ ଜୁଇଗଲା ପ୍ରାୟେ ଝିଅଟା ହେଉଛି ବୋଧହୁଏ ଅନୁରାଧାକୁ । କନ୍ତୁ କଅଣ ଥିଲା ତାର ଯୋଗ୍ୟତା, କଅଣ ବା ଥିଲା କୁଳୀନତା ? କାହିଁକ ବା ମୋ ବାପୁଟାର ମନ ବାପୁ ହେଲା ? କୁଆଡେ ବା ଗଲା ସେ ପିଲାଟା ? ହେ ଭଗବାନ, କଅଣ କରବ ମୁଁ ? ମତେ କହିଦିଅ ଉପାୟ । ମୋର ସୁନାର ସଂସାର ଚୂନା ହୋଇ ଯାଉଛି ମା" !

ସୁନାର ସଂସାର ଚୂନା ହୋଇଯାଉ ନାହିଁ ଯେ, ସ୍ୱାମୀ ଗୁଡ଼ଗଲା ପରେ ସୁନାର ସଂସାରଟା ଭାଙ୍ଗି ଯାଉଛି । ତାକୁ ଯୋଡ଼ାଯୋଡ଼ କରନେବା ପାଇଁ ସେ ଚିନ୍ତାକ୍ରାନ୍ତ, ପୁଅଟିକୁ ଭଲଘରେ ବାହା କରାଇ ବୋହୂପର ବୋହୂଟିଏ ଆଣିବାପାଇଁ । ମାତ୍ର ନରୋତ୍ତମ ଭାବେ, ବଡ଼ଲୋକ ଘରର ଆଧୁନିକା ଝିଅ—ଧଳା ହାତୀପର ଘରକୁ ଆସିବେ ସିନା, ଘରସଂସାର କରଜାଣିବେ ନାହିଁ । ତାଙ୍କର କଥା କଥାକେ ଅଭିମାନ, ଆଡ଼ମ୍ବର ଓ ଅପମାନ । ଅହଙ୍କାର ମାତ୍ରାଟା କାହିଁକ କେଜାଣି ଟିକେ ସେଠି ବେଶୀ ଦେଖାଯାଉଛି । ପାଠଶାଠ ପଢ଼ିଲେ ସହିଷ୍ଣୁତା ଓ ନମ୍ରତାଟା ବଢ଼ିଯିବାର କଥା ମାତ୍ର କାହିଁକ କେଜାଣି ଶତକଡ଼ା ନବେ ସ୍ଥଳେ ଠିକ୍ ଓଲଟା ଫଳ ଫଳୁଛି । ତେଣୁ ନରୋତ୍ତମ ମନେମନେ ଠିକ୍ କରଛି ହୁଏତ

ବିବାହ କରିବ ନାହିଁ । କଲେ କରିବ ଗୋଟିଏ ଗରିବ ବା ମଧ୍ୟବିତ୍ତ ପରିବାରରେ ।

ନରୋତ୍ତମ ଦିଲ୍ଲୀରୁ ଫେରିଲା । ପଢ଼ାପଢ଼ି ଆରମ୍ଭ କରିଦେଲା । କେତେଦିନର ଅଭ୍ୟାସ । ମନଟା ବେଳେବେଳେ ନବୀନବାବୁଙ୍କ ଘରଆଡ଼କୁ କାନଡେରେ, ଆଖି ଫେରାଏ, କିନ୍ତୁ ନରୋତ୍ତମ ଭୁଲାଇ ଦିଏ ସେ ମନକୁ । କହେ—କଅଣ ଲାଗୁଛି ମନ ? ସେମାନେ କଅଣ ବାସ୍ତବିକ ସ୍ନେହ କରୁଥିଲେ ? କୃତ୍ରିମତାରୁ ଦୂରେଇ ରହିବା ନିତାନ୍ତ ବାଞ୍ଛନୀୟ ।

ନରୋତ୍ତମର ମନଗହନରେ କୁରଙ୍ଗ ଝୁରୁଛି—

'ସେର ପୂରିଲା, ମାଣ ପୂରିଲା
ଉଠରେ ପୁତା ଉଠ ।
ଉଠରେ ପୁତା ଉଠ' ।

କିନ୍ତୁ ଉଠିବ କିଏ ? କାହିଁ ଅନୁରାଧା ? ନରୋତ୍ତମ ନିଜେ ତାକୁ ଖୋଜିଛି । ନିଜେ ବୁଝି ଆସିଛି ତାର ଗୋଟିଏ ଗାଁଆରେ ବିବାହ ହୋଇଯାଇଛି । ଏତେ ଦିନକେ ତାର ସଂସାରଟାକୁ ସେ ସଜାଡ଼ି ନେବଣି । କୋଳରେ ତାର ହୁଏତ ଛୁଆ ପିଲା କିଛି ଖେଳିବେଣି । କାହିଁକି ଆଉ ତା ଚିନ୍ତା ! ପରଗୋତ୍ରୀ ଝିଅ, ପରନାରୀ ସେ ମାତୃବତ୍ । ତା ବିଷୟରେ ଚିନ୍ତାକରିବା ବି ମହାପାପ ।

ନରୋତ୍ତମ ଅନେକ ଭାବିଛି, ଅନେକ ଚିନ୍ତା କରିଛି । ମନଟା ଟାଣିଛି—"ଅରେ ଚାଲ ଅନୁରାଧା ଘରଆଡେ ବୁଲିଆସିବୁ" । କିନ୍ତୁ ଛି, ଲୋକେ କଣ ବୋଲି କହିବେ ! ଅସୁନ୍ଦର କଥା । ନିତାନ୍ତ ଅଶୋଭନୀୟ । ଅନୁରାଧା, ତା ସଂସାରଟିକୁ ଦେଇ ଶାନ୍ତିରେ ଦିନ କଟାଉ । ତାର ନିଷ୍କଳ ମନ ଉପରେ ବୃଥାରେ

ତରଙ୍ଗ ସୃଷ୍ଟି କରି ଫାଇଦା କାହାର କଅଣ ହେବ ? ସେ ତ ଆଉ ଫେରି ଆସି ପାରିବ ନାହିଁ ? ବୃଥାରେ ମନ ବନରେ ତାର ବହ୍ନି ଜଳାଇଲେ ଉପକାର କାହାର କଅଣ ହେବ !

ଗାଁକୁ ଗଲା ନାହିଁ । ବି. ଏ. ପାସକରି ଡ଼ି. ଇଡ଼ି ପଢ଼ିଲା । ପଢ଼ା ଶେଷରେ ମନ୍ଦାରପୁର ଗ୍ରାମର ହାଇସ୍କୁଲରେ ହେଡ୍‌ମାଷ୍ଟର କାମ କରିବା ପାଇଁ ଚାଲିଗଲା । ନୂଆ ବିଦ୍ୟାଳୟଟି । ଅଳ୍ପ ଛାତ୍ର, ଛାତ୍ରୀ । ଅଭିଭାବକମାନେ ଭକ୍ତିଶ୍ରଦ୍ଧା କରିବାକୁ ଆରମ୍ଭ କଲେ । ଧନୀ ଓ ସମ୍ଭ୍ରାନ୍ତ ଘରର ପିଲା । ଚାଲିଚଳନ ଓ ଅନ୍ୟାନ୍ୟମାନଙ୍କ ପ୍ରତି ବ୍ୟବହାରରୁ ସୁ ରୁଚି ଓ ସୁଜନତାର ପରିଚୟ ମିଳେ । ସମସ୍ତେ ତାଙ୍କପ୍ରତି ଆକୃଷ୍ଟ ହୋଇ ପଡ଼ିଲେ ।

ବୋଉଙ୍କ ପାଖରୁ ଘନ ଘନ ଚିଠି ଆସେ—"ଶେଷକୁ ଚାକିରି କରି ବସିଲୁ ନରୁ ? କଅଣ ନାହିଁ ତୋର ? ତୋ ସମ୍ପତ୍ତି ଦେଖିବାକୁ କିଏ ଅଛି ? ଏ ବୁଢ଼ୀ ବୟସରେ ମୁଁ ତ ଏକ ପ୍ରକାର ବିଛଣା ଧରିଲିଣି । ମୋ ପ୍ରତି ତୋର ଏତେ ରାଗ କାହିଁକି ପୁଅ ? ଅନେକ ଦିନ ହେଲା ଘରକୁ ଆସିନାହୁଁ । ଥରେ ଆସିବୁ" ।

ଉତ୍ତର ଦିଏ ନରୋତ୍ତମ । "ଯିବି ବୋଉ ! ନିଶ୍ଚୟ ଯିବି । ନୂଆ ସ୍କୁଲଟାର ପରିଚାଳନାଟିକୁ ଟିକିଏ ବାଗେଇ ଦେଇ ମୁଁ ଯିବି ନିଶ୍ଚେ" ।

ଗାଁରେ ଏକତା ଏବେ ସ୍ୱପ୍ନ ହେଲାଣି । ସ୍ୱାଧୀନତା ପରେ ବହୁମୁଖୀ ଯୋଜନା କାର୍ଯ୍ୟକାରୀ ହେବାକୁ ବସିଛି । ଅର୍ଥହିଁ ଅନର୍ଥର ମୂଳ । ସ୍ୱାର୍ଥସିଦ୍ଧି ଲାଗି ଗାଁ ଗାଁରେ କଳହୋଳ ଓ ଅମେଳ । ଗ୍ରାମଗୀତା ଆସି ଶିକ୍ଷାନୁଷ୍ଠାନରେ ମଧ୍ୟ ପଶୁଛି ।

ପରଗୃଳନା କମିଟି ସଭ୍ୟମାନଙ୍କ ମଧ୍ୟରେ ଦଳାଦଳି କଳଗୋଳ । ନରେନ୍ଦ୍ରମର ବ୍ୟକ୍ତିତ୍ୱ କିନ୍ତୁ ସେ ସବୁ ଗଣ୍ଡଗୋଳର ଶାନ୍ତିପୂର୍ଣ୍ଣ ସମାଧାନ ଅଣାଇ ପାରିଚି । ଯୁବକ ହେଲେହେଁ ଧୀରସ୍ଥିର ଅଚଞ୍ଚଳସ୍ୱଭବ; ସଦା ହସହସ ମୁଖ, ପିଲା ସଙ୍ଗରେ ପିଲା, ବୁଢ଼ା ସଙ୍ଗରେ ବୁଢ଼ା, ସବୁଥିରେ ସମସ୍ତଙ୍କ ସଙ୍ଗରେ ସମଭାବ, ତଥାପି ଗୁରୁଗମ୍ଭୀର ସ୍ୱଭବ ନରେନ୍ଦ୍ରମକୁ ଅତି ଅଳ୍ପ ସମୟ ମଧ୍ୟରେ ଲୋକପ୍ରିୟ କରାଇ ପାରିଚି । ସମସ୍ତଙ୍କ ସଙ୍ଗରେ ସାଙ୍ଗହୋଇ ସୁଦ୍ଧା ନିର୍ଲିପ୍ତ ରହିବା, କାହାର ବ୍ୟକ୍ତିଗତ କଥା ନେଇ ଆଲୋଚନା ନକରିବା, କାହାର ଭଲ ମନ୍ଦ ବିଷୟରେ ପଦୁଟିଏ କଥା ନକହିବା ହାରା ନରେନ୍ଦ୍ରମକୁ ସମସ୍ତେ ଭଲ ପାଉଚନ୍ତି ।

କିନ୍ତୁ ନରେନ୍ଦ୍ରମର ମନ ଭିତରେ ଏଣିକି ବୋଉଙ୍କ ଚିନ୍ତା ଘାରିଲାଣି । "ମୋ ପ୍ରତି ତୋର ଏତେ ରାଗ କାହିଁକି ପୁଅ" ? ଭାବିଲା ବେଳକୁ ମନଟା କାନ୍ଦି ଉଠୁଚି । ମନକୁରଖି ଏବେ ବୋଉଙ୍କ କଥା ଝୁରି ହେଲାଣି ।

ଶୁଣୁ ଶୁଣୁ ଜମିଦାରମାନଙ୍କ ଜମିଦାରି ଉଠିଗଲା । ଜମିଦାର ମାନେ ମୁଣ୍ଡରେ ହାତଦେଇ ବସିପଡ଼ିଲେ । ବୋଉ ଚିଠି ଦେଇଚନ୍ତି—ପୁଅରେ, ଆମେ ଏଥର ଦାଣ୍ଡର ଭିକାରି ହୋଇ ଯିବା ପରା ? ମାନ ସମ୍ମାନ ସବୁତ ଯିବ, ଆମେ ବଞ୍ଚିବା କେମିତି ?

ନରେନ୍ଦ୍ରମ ଚିଠିର ଉତ୍ତର ଦେଲା—"ବୋଉ ! ମଣିଷ ମଣିଷ ସମସ୍ତେ ସମାନ ହେବେ । ରାଜନୀତିକ କାରଣରୁ କୌଣସି ପାର୍ଥକ୍ୟ ରହିପାରିବ ନାହିଁ । ସ୍ୱାଧୀନତା ଆସିଲା । ସାମ୍ୟବାଦ ଆସୁଚି । ଯୋଗ୍ୟତା ଓ ବ୍ୟକ୍ତିତ୍ୱ ଯେଉଁ ମଣିଷ ଆଦର ସମ୍ମାନ ପାଇବ ।

ବଡ଼ ସାନ ଭେଦ ଏଣିକି ମନରୁ ଦୂର କରିଦିଅ କି, ଦେଖିବ ଶାନ୍ତି ଫାଇପାରିବ । ଆମେ ଆଜିଯାକେ ବଡ଼ଲୋକ ଥିଲୁ । ଜମିଦାର ଥିଲୁ । ଧନୀ ଥିଲୁ । ରଜା ପରି ଚଳୁଥିଲୁ । ଗରିବ କେମିତି ଚଳୁଥିଲେ ଜାଣ ? ରଜାମାନଙ୍କ ରାଜ୍ୟ ଗଲା । ଜମିଦାରମାନଙ୍କ ଜମିଦାରୀ ଗଲା । ସେମାନେ ତଳକୁ ଖସି ଆସନ୍ତୁ । ଗରିବ ଉପରକୁ ଟିକେ ଉଠି ଯାଆନ୍ତୁ । ଉଭୟେ ସମାନ ପାହାଚରେ ଠିଆ ହୋଇ ହାତ ମିଳାନ୍ତୁ, ଦେଖିବ ଦେଶସାରା ଶାନ୍ତି ସନ୍ତୋଷ ଗୁଞ୍ଜି ଗୁଞ୍ଜି ଆସିଯିବ । ପଛକଥା ଭୁଲି ଯାଅ ବୋଉ ! ନୂଆ ଦୁନିଆର ଜନ ଜାଗରଣ ଆଡକୁ ଆଖି ପକାଅ । ସବୁ ମଣିଷକୁ ସମାନ ମଣି ମଣିଷ ହିସାବରେ ସମ୍ମାନ ଦିଅ, ଦେଖିବ ସେମାନେ ବି ତୁମକୁ ପୂର୍ବ ପରି ସମ୍ମାନ ଦେଉଥିବେ । ଇଂରେଜ ଅମଳର ଅନ୍ଧାରିଆ ରାଜୁତି ସରିଗଲା ବୋଉ ! ସାମନ୍ତବାଦୀ ମନକୁ ଆମେ ବଦଳାଇ ନନେଲେ ଚଳିବ ନାହିଁ" ।

ଗ୍ରେଟ ବସାଘରଟିଏ । ତଳଉପର ଦି' ବଖରା ରହିବା ଘର । ରୋଷେଇଘର ବଖରାଏ । ଗୋଟିଏ ରୋଷେଇଆ ପିଲା । ସବୁବେଳେ ପ୍ରାୟ ଗ୍ରୁପ ଗ୍ରୁପୀ ଓ ଅଭିଭାବକ ସମାବେଶ । ନୂଆ ସଂସାରଟି ଯେମିତି ନରୋତ୍ତମ ଆନନ୍ଦରେ ତାର ଦିନ କଟାଏ । ସେବାରେହିଁ ବୁଡ଼ି ରହେ ତାର ମନ, ପ୍ରାଣ, ଜ୍ଞାନ, ଧ୍ୟାନ । ଏମିତି ଏମିତି ଛଅମାସ ଗଡ଼ିଲା, ବର୍ଷେଟିଏ ବିତିଲା । ହଠାତ୍ ଦିନେ ହରିବାବୁ ଅସି ହାଜର ହୋଇଗଲେ—ନରୋତ୍ତମର ମାମୁଁ । ହରେକୃଷ୍ଣ ଚଉଧୁରୀ । ଅତି ବଡ଼ଲୋକ ଥିଲେ । ବେଳ ପାଉନଥିଲେ ଭଉଣୀ ଘରକୁ ଘନ ଘନ ଆସିବା ପାଇଁ । ଜମିଦାରୀ ଗଲା ପରେ ସାଧାରଣ ସ୍ତରକୁ ଓହ୍ଲାଇ ପଡ଼ିବାକୁ ବାଧ୍ୟ ହୋଇଛନ୍ତି । ଭଉଣୀ ଓ ଭଣଜା କଥା ମନେ ପଡ଼ୁଛି । ଆଡ଼ମ୍ବର ହ୍ରାସ ହୋଇ ଯାଇଛି । ଭଉଣୀଠାରୁ ଦକ୍ଷିଣା

ଚଠପାଇ ଭଣଜା ପାଖକୁ ଗ୍ଭଲ ଆସିଚନ୍ତି—କଛି ଗୋଟାଏ ବ୍ୟବସ୍ଥା କରିବାକୁ ।

ନରୋତ୍ତମ ବାବୁଙ୍କ ବସାର ବାତାବରଣ ସମ୍ପୂର୍ଣ୍ଣ ବଦଳି ଯାଇଚ । ସ୍ୱଳ୍ପଭାଷୀ ଗମ୍ଭୀର ହରେକୃଷ୍ଣବାବୁ ଗୋଟିଏ ଘରେ ବିଛଣା ଜମାଇ ଦେଇଚନ୍ତି । ନରୋତ୍ତମ ତାଙ୍କ ପାଇଁ ଖଣ୍ଡିଏ ଆରାମ ଚଉକି କାହୁଁ ଯୋଗାଡ଼ କରି ଆଣିଚି । ସକାଳୁ ଉଠି ସେବା ପୂଜାରେ ଅନେକ ସମୟ କଟେ, ତାପରେ ଜଳଖିଆ, ଗୋଟାଏ ବେଳକୁ ଖିଆପିଆ । ଶୋଇ ଉଠୁଉଠୁ ଗ୍ଭରିଟା ପାଞ୍ଚଟା । ତା ପରେ ସାନ୍ଧ୍ୟ ଭ୍ରମଣ । ତାପରେ ବିଶ୍ରାମ । ଭଣଜା ଓ ମାମୁଁଙ୍କର ସାକ୍ଷାତ ହୁଏ ରାତିରେ ଖାଇଲା ବେଳେ, ପଦେ କି ଦିପଦ କଥା, ତାପରେ ବିଛଣା ଧରି ଶୋଇପଡ଼ିବା । ଏଇହେଲା ଦୈନନ୍ଦିନ ରୁଟିନ । ଛୋଟ ଘରଟି ଭିତରେ ଚଳିବାକୁ ତାଙ୍କର ବଡ଼ ଅସୁବିଧା ହେଉଚି । ମାତ୍ର ଆସିଚନ୍ତି ଯେଉଁ କାମ ପାଇଁ ସେତକ ନସାରି ଯିବେବା କେମିତି ?

ରବିବାର ଦଶଟା ପରେ ମାମୁଁଭଣଜାଙ୍କର ସାକ୍ଷାତ ହେଲା । ଅନେକ ବେଳ ନୀରବ ରହି କଥାଟାକୁ ଆରମ୍ଭ କଲେ ମାମୁଁ— "ଆସିଲା ବେଳକୁ ନାନୀ କେତେକରି କହିଚି, ତାର ଘଣ୍ଟା ଅସୁବିଧା ହେଉଚି । ତା ପାଇଁ ତୁ ଗୋଟାଏ କଛି ବ୍ୟବସ୍ଥା ନକଲେ ଚଳିବ ନାହିଁ । ବୁଢ଼ୀଶରୀର ସେ ଟିକେ କାହାର ସାହାଯ୍ୟ ଗ୍ଭହୁଁଚି । ଟିକିଏ ସେବା ଶୁଶ୍ରୂଷା ଦରକାର । ଆପଣାର ଲୋକ ବିନା କିଏ କରିବ" ?

ଗମ୍ଭୀର ହୋଇ ତଳକୁ ମୁହଁ ପୋତିଲା ନରୋତ୍ତମ । ଗ୍ଭକିରି ହୋଇଗଲେ ବି ନିଜେ ସେ ବାଟ ବନ୍ଦ କରି ଦେଇଚନ୍ତି । ଅନୁଚିତ ଆଣିଥିଲେ ହେଁ ତ ମୁଣ୍ଡ ଉପରେ ଥୋଇ ଥାଆନ୍ତା । କିନ୍ତୁ ସେ ଚିନ୍ତା ଆଜି କରି ଲାଭ କିଛି ନାହିଁ ।

କେବଳ ଭାବନ୍ତି ସିନା କିଛି କହନ୍ତି ନାହିଁ ।

ମାମୁଁ ଭଣଜାର ନୀରବତା ଲକ୍ଷ୍ୟ କଲେ । କିଛି ସମୟ ନୀରବ ରହିଲେ । ପୁଣି କଥାଟାକୁ ଆରମ୍ଭ କଲେ ଅନ୍ୟ ଦିଗରୁ—"ନାନାଙ୍କ ଜମିଦାରୀ ମକଦ୍ଦମି ସ୍ୱପ୍ନ ଭୁଲୁ ନାହାଁନ୍ତି ସିନା, କିନ୍ତୁ ଯୁଗ ବଦଳି ଯାଇଚି । ଆମକୁ ଆଜି ସମସ୍ତ ସ୍ଥାନରେ ସମାନ ପାଦ ପକାଇ ଚାଲିବାକୁ ହେବ । ମୁଁ କଅଣ କହୁଥିଲି କି ଗୋଟିଏ ମଧ୍ୟବିତ୍ତ ଭଦ୍ର ପରିବାରରୁ ଝିଅଟିଏ ହେଲେ ଆସିଲେ ଯୁଗକୁ ଚାହିଁ ବୋହୂ ଚଣିଆ କରନ୍ତା ଭଲ । ବଡ଼ଘରର ପିଲାଙ୍କ ମନରେ ବଡ଼ିମା ବେଶୀ । ଶାଶୁର ସେବା ସେମାନେ କରିପାରିବେ ନାହିଁ । ଘରର ପୁରୁଣା ହେଲେ ଜୀବନ ଯାକ ବଡ଼ି ଚାଲନ୍ତି ଯିଏ ଆଜିକାଲିର ଅଭାବ ଦିନରେ ସେମାନେ ଚଳିପାରିବେ ନାହିଁ" ।

ନୀରବ ରହି ଦୀର୍ଘ ନିଃଶ୍ୱାସଟିଏ ଛାଡ଼ିଲି ନରୋତ୍ତମ । ହରିବାବୁଙ୍କ ପରି ଦକ୍ଷ ମାମଲତକାର ନିକଟରେ ନରୁର ମନସ୍ତତ୍ତ୍ୱ ଜାଣିବା କଠିନ ହେଲି ନାହିଁ । ସେ ଜାଣିପାରିଲେ ଠିକ୍ ଏଥର ରୋଗ ନିର୍ଣ୍ଣୟ ସରିଗଲି ।

ପୁଣି କିଛି ସମୟ ପରେ କଥା ଆରମ୍ଭ କଲେ—"କଅଣ କହୁଚୁ ତେବେ, ମୁଁ ଗୋଟିଏ ପାତ୍ରୀ ଠିକ୍ କରେ ? ଆସିଚ ଯେବେ ଏଇ ଅଞ୍ଚଳରୁ ଠିକ୍ କରି ନଏ" ?

ତଳକୁ ମୁଣ୍ଡ ନୁଆଇଁ ଦୀର୍ଘ ଶ୍ୱାସଟିଏ ଛାଡ଼ି ନରୁ ଛୋଟ ଉତ୍ତରଟିଏ ଦେଲି—"କରନ୍ତୁ" ।

ଦୁଶ୍ଚିନ୍ତା ଦୂରହେଲି । କିନ୍ତୁ ସମ୍ପୂର୍ଣ୍ଣ ନୁହେଁ । ପୁଣି ପଚାରିଦେଲେ ହରିବାବୁ—"ତୁ ଦେଖିବାକୁ ଯିବୁ" ?

"ନାଁ" ।

"ତେବେ ମୁଇଁ ଠିକ୍ କରିଦେବି ଦିନ" ?

"କରନ୍ତୁ କନ୍ତୁ"—

"କନ୍ତୁ ପୁଣି କଅଣରେ ବାବା" ?

"ନିର୍ବାଚନଟା ନଭେମ୍ବର ହେବ" ।

"ଆଜ୍ଞା" ।

ନୀରବ ରହି ହରିବାବୁ ଚିନ୍ତା କରିବାକୁ ଲାଗିଲେ । ସେଦିନ ଗୁରୁ ଗମ୍ଭୀର ଭାବେ ରାତିଟି କଟିଲା । ତହିଁ ଆରଦିନ ରାତି ଦଶଟା ଧାରେ ମାମୁ ଭଣଜାଙ୍କ ଦେଖାସାକ୍ଷାତ ଖାଇଲା ପାଖରେ ।

ଦୁଇଟି ଦିନ ପରେ ଏକୁଟିଆ କୋଠରୀଟି ଭିତରେ ହରିବାବୁଙ୍କ ସଙ୍ଗରେ ସାକ୍ଷାତ କଲେ ମେନେଜିଂ କମିଟିର ଜଣେ ବୃଦ୍ଧ ସଭ୍ୟ-କେଦାରେଶ୍ୱର ମହାପାତ୍ର ।

"ନମସ୍କାର, ଆସନ୍ତୁ" ।

"ନମସ୍କାର । ଆପଣଙ୍କ ପରିଚୟ ପାଇ ମୁଁ ଧନ୍ୟ । ଅଳ୍ପ କେତେଦିନ ମଧ୍ୟରେ ନରୋତ୍ତମ ବାବୁ ଏ ଅଞ୍ଚଳରେ ଯଥାର୍ଥ ଲୋକପ୍ରିୟ ହୋଇ ପାରିଚନ୍ତି" ।

"ମହାପାତ୍ର ମହାଶୟ ! ମୁଁ ଆପଣଙ୍କ ସୁଗୁଣର ପରିଚୟ ଯଥେଷ୍ଟ ପାଇ ସାରିଲଣି । ଆପଣଙ୍କ ସହିତ ବନ୍ଧୁତା ସ୍ଥାପନ କରିବାକୁ ମୁଁ ଇଚ୍ଛୁକ" ।

"ଆପଣଙ୍କ ଦୟା ବୋଲି କହିବି । କହିବି ଚନ୍ଦ୍ର ହୋଇ ନିଜର ଉଦାର ଗୁଣ ବଳରେ ଆପଣ ବାମନଟିକୁ ଊର୍ଦ୍ଧ୍ୱକୁ ଟେକି ନେବାକୁ ଚାହାନ୍ତି । ସେତ ଆମର ଭାଗ୍ୟ" ।

ଅଳ୍ପ ହସି ହରିବାବୁ ଧୀର ସ୍ୱରରେ କହିବାକୁ ଆରମ୍ଭ କଲେ—"ଦେଖନ୍ତୁ ମହାଶୟ ! ଜମିଦାରୀ ଗଲା । ଜମିବାଡ଼ ଯିବ ଚାଲି । ଧନ କେଇଟା ପରେ ଆମେ ସର୍ବହରା ଦରିଦ୍ର ହୋଇ ଦାଣ୍ଡରେ ଛିଡ଼ା ହେବା ସିନା" ?

ହାତୀଶାଳ ଭାଙ୍ଗିଲେ ଗୋଶାଳା ହୁଏ ନାହିଁ ଆଜ୍ଞା । ହେଲେ ଅବା ଘୋଡ଼ାଶାଳ ହୋଇପାରେ" ।

ହରିବାବୁ—"କନ୍ୟା ପାତ୍ରଟିକ ଥରେ"—।

ମହାପାତ୍ରେ—"ନିଶ୍ଚୟ ଦେଖିବେ । କାଲିକ ମୁଁ ଆସିବି । ନୋହିଲେ ଆଜ ହିଁ ଆସନ୍ତୁ ମୋ କୁଡ଼ିଆରେ ପାଦଧୂଳି ଦେଇ ଚାଲିଯିବେ" ।

ତେବେ ଚାଲନ୍ତୁ ଆଜ । ଅଳ୍ପ ତ ବାଟ । ମୁଁ ବି ପାଞ୍ଚଟା ବେଳକୁ ଟିକେ ବୁଲିଚାଲି କରି ଆସେ ତ" !

"ବହୁ ଭାଗ୍ୟର କଥା । ଗରିବ ଘରେ ଦାରିଦ୍ର୍ୟ ଓ ଅଭାବ ଛଡ଼ା କଅଣ ବା ଆଉ ସମ୍ବଳ ଅଛି" ?

ହସୁଚନ୍ତି ହରିବାବୁ । କହି ଉଠିଲେ—"ଆପଣ ତ ପଣ୍ଡିତ ଲୋକ । ଜାଣିଥିବେ ଦାରିଦ୍ର୍ୟକୁ କେହି କେହି କବି ଲକ୍ଷ୍ମୀ ସହିତ ତୁଳନା କରିଚନ୍ତି—"ଦାରିଦ୍ର୍ୟଲକ୍ଷ୍ମୀଂସଯୌ" ।

ହସି ଉଠିଲେ କେଦାରେଶ୍ୱର ମହାପାତ୍ରେ । ସୁନାମଧନ୍ୟ ପଣ୍ଡିତ ସେ । ଅଞ୍ଚଳ ମଧ୍ୟରେ ଜଣେ ଜଣାଶୁଣା ଭଦ୍ରବ୍ୟକ୍ତି । ବଡଲୋକ ନ ହେଲେ ବି ଗୁଣୀ, ମାନୀ ।

ଅଳ୍ପ ସମୟ ପରେ ଘଣ୍ଟା ବାଜିଲା । ଉଭୟେ ବାହାରି ପଡ଼ିଲେ ବୁଲି ଯିବା ଛଳରେ । ଆଡ଼ମ୍ବର ନାହିଁ । ଜାକଜମକ ନାହିଁ । କେହି ବି ଜାଣିପାରିଲେ ନାହିଁ । ହରିବାବୁ କନ୍ୟାଟିକୁ ଆଶୀର୍ବାଦ କରି ଫେରି ଆସିଲେ । ବିବାହର ଦିନ ଠିକ୍ ହୋଇଗଲା । ରାତିରେ ଖାଇଲାବେଳେ ଧୀରେ ସେ ଶୁଣାଇ ଦେଲେ— "ଦିନ ସ୍ଥିର ହୋଇଗଲା । ପାତ୍ରୀଟି ଦେଖିବାକୁ ସୁନ୍ଦର । କିନ୍ତୁ ପଢ଼ିଛି ମଧ୍ୟ" ।

ଅତି ଅନୁଚ୍ଚ ସ୍ୱରରେ ନରୋତ୍ତମ ସମ୍ମତି ଜଣାଇଲା— "ହଉ" ।

---

# ପନ୍ଦର

ବୋହ । ସମାଜର ଗୋଟିଏ ଅନୁଷ୍ଠାନ । ବଂଶବୃଦ୍ଧି ଉଦ୍ଦେଶ୍ୟରେ ଆଇନଗତ ବ୍ୟବସ୍ଥାଟିଏ । କେତେ ଯୁଗ ତଳେ ମନୁ ସେ ବ୍ୟବସ୍ଥା ଦେଇ ଯାଇଥିଲେ । ଏବେବି ବିଭିନ୍ନ ପ୍ରକାରେ ମଣିଷ ସମାଜ ସେ ନିୟମ ମାନି ଚାଲି ଆସୁଛି । ପାତ୍ର ପାତ୍ରୀ ବ୍ୟାକୁଳ ହୁଅନ୍ତୁ ବା ନାହିଁ ଅଭିଭାବକମାନେ କିନ୍ତୁ ସବୁବେଳେ ଏଇଥିଲାଗି ଉଦ୍‌ବିଗ୍ନ । ଦିନେ ନୁହେଁ ଅଧେ ନୁହେଁ ବାରମ୍ବାର ଘନଘନ ଚିଠିପତ୍ର ଚାଲିଛି ବୋଉଙ୍କ ପାଖରୁ । ଏଇ ବିବାହ ପ୍ରସ୍ତାବ ନେଇ ମାଆ ପୁଅଙ୍କ ମନ ଫଟାଫଟି । ଏଇଥିପାଇଁ ରାଜଗୁରୁଙ୍କ ପରିବାରଟା ସ୍ଥିରଗମ୍ଭୀର ହୋଇଗଲା । ଏଇ ବିବାହପାଇଁ ନବୀନବାବୁଙ୍କ ମନ ଉଣା । ଛି ଛି ଛି ! ଏଇଥି ପାଇଁ ପୁଣି ମାମୁଁ ଧାଇଁ ଆସିଚନ୍ତି । ହଉ ଏବେ ସେଇମାନଙ୍କ ଇଚ୍ଛା ପୂର୍ଣ୍ଣ ହେଉ ।

ଇଚ୍ଛା ପୂରଣ ହେବାର ସବୁ ଠିକ୍‌ଠାକ୍ । ଦିନ ମଧ୍ୟ ସ୍ଥିରହୋଇ ଗଲାଣି । ଆଜି କଅଣ ? ମାମୁଁ ମଧ୍ୟ ନରୋତ୍ତମର ମତାମତ ଗ୍ରହଣ କଲେଣି । ବିବାହଟି ନରୋତ୍ତମର ଘରରେ ଅନୁଷ୍ଠିତ ହେବ ଏବଂ ଯୌତୁକ ଲାଗି କୌଣସି ବାଢବାଧକତା ରହିବ ନାହିଁ । ବର, ବରକର୍ତ୍ତା ଓ ଅଳ୍ପ କେତେଜଣ ସାଙ୍ଗସାଥି ଯିବେ । ଶଙ୍ଖଟିଏ ଓ ହୁଳହୁଳି କେତୋଟିରେ ବିବାହକର୍ମ ବଢ଼ିବ । ହୁଏତ ବୈଦିକ ରୀତିରେ ବେଦ ଉପରେ କନ୍ୟାଦାନ କରିବେ କନ୍ୟାକର୍ତ୍ତା । ଘଣ୍ଟେ ଦିଘଣ୍ଟେ ଶଗଡ଼ରେ ବରକନ୍ୟା ବିଦାୟ ହେବେ ।

ମାମୁଁ ଏଥିରେ ରାଜି ।

ନରୋତ୍ତମ କହିଲା—ଆପଣ ବୋଉଙ୍କ ପାଖକୁ ଚିଠି ଖଣ୍ଡିଏ ଲେଖନ୍ତୁ । ବିଶ୍ୱକର୍ମ ପାଇଁ ସେ କିଛି ଟଙ୍କା ପଠାନ୍ତୁ । ଉପରୋକ୍ତ ସାମାନ୍ୟ ଖରଚ ବାଦ ବଳକାତକ ଦରିଦ୍ର ଛାତ୍ରଛାତ୍ରୀଙ୍କୁ ବାଣ୍ଟି ଦିଆଯିବ ।

ଗମ୍ଭୀର ସ୍ୱରରେ ହରିବାବୁ କହିଲେ—"ହଉ" ।

ସବୁତ ଠିକ୍‌ଠାକ୍ । ମାତ୍ର ନରୋତ୍ତମର ମନରେ ଆନନ୍ଦ କାହିଁ ? ମନଟା ଠାଏ ଅଟକି ଯାଇଥିଲେ ସହଜେ ଫେରେ ନାହିଁ । ସରଳ ଗାଉଁଲି ଝିଅ ଅନୁରାଧାଟିର କଥା ମନରୁ ପାଶୋର ଯାଉ ନାହିଁ । ଯେତେ ଦୂର କରିଦେଲେ ବି ତାର ସେ ସରଳ ଗୃହିଣୀ, ଅନାବିଳ ସ୍ନେହ ଭୁଲି ହେଉନାହିଁ । କିନ୍ତୁ ତା କଥା ଭାବି ଆଉ ଲାଭ କଅଣ ? ସେ ତ ପରର । ତାର ନୂତନ ସଂସାର ସୋନା ସେ ତ ଭୁଲି ଯିବଣି । ଭୁଲି ଯାଇ ନଥିବ ନିଶ୍ଚୟ । ଜୀବନରେ ସେ ଘଟନା ଭୁଲି ହୁଏନାହିଁ । ଯେତେ ସୁଖରେ ଥାଉ ସେ, ଯେତେ ଆନନ୍ଦରେ ଥାଉ, ରହି ରହି ତା ମନ ମଧ୍ୟରେ ନିଶ୍ଚୟ ସେ ସ୍ମୃତିର ଭୂତ ଦେଖା ଦେଉଥିବ ।

ଏକୁଟିଆ ବସି ନରୋତ୍ତମ ଆପଣାକୁ ଶାସନ କରିଦିଏ— ଭୁଲି ଯା ମନ, ଏକାବେଳକେ ପାଶୋରି ପକା । ଯିଏ ଗଲା ସେ ତ ଗଲା । ତା କଥା ଭାବି ଫଳ କଅଣ ? ଆମର ସଂସାର ଆମକୁ କରିବାକୁ ପଡ଼ିବ । ସମାଜରେ ଆମର କିଛି କାମ କରିବାର ଅଛି । ସଂସାର ଗୋଟିଏ ଆଶ୍ରମ । ସେ ଆଶ୍ରମରେ ଜଣେ ସାଥୀ ଲୋଡ଼ା । ଗୃହସ୍ଥ ଧର୍ମ ରକ୍ଷା ଲାଗି ଏବଂ ପିତା ପ୍ରପିତାମହଙ୍କ ନାମ ଅକ୍ଷୁଣ୍ଣ ରଖିବା ଲାଗି ସୁପୁତ୍ର ଓ ସୁକନ୍ୟା କୋଳରେ ଧାରଣ କରିବା ଲାଗି

ଜଣେ କୁଳୀନା ଧର୍ମପତ୍ନୀ ଲୋଡ଼ା । ବୋଉ ଅଶାନ୍ତରେ ଅଛନ୍ତି । ମାମୁଁ ନକେ ଦୌଡ଼ ଆସିଚନ୍ତି । ଜିଦ୍ ଧରି ବସିବା ଠିକ୍ ନୁହେଁ । ଏଣେ ତ ସବୁ କଥା ଠିକ୍‌ଠାକ ହୋଇ ସାରିଲାଣି । ଆଶାୟୀ କନ୍ୟା ପିତା ଉଚ୍ଛୁକ ଭାବରେ ଯଥାଶକ୍ତି ଯୋଗାଡ଼ କରି ସାରିବେଣି ଏବଂ କନ୍ୟାଟିର କାନରେ କଥାଟି ବାରମ୍ବାର ବାଜୁଥିବ । ତାର ପ୍ରାଣରେ ବଦ୍‌ବଗ୍ନତାର ତରଙ୍ଗ ଖେଳୁଥିବ ନିଶ୍ଚୟ । ସୁତରାଂ ଅନ୍ୟ କାହାର ଚନ୍ତାକୁ ମନ ଭିତରେ ସ୍ଥାନ ଦେବା ସମ୍ପୂର୍ଣ୍ଣ ଅଧର୍ମ ହେବ ।

ଅଧର୍ମ ହେବ ତ ନିଶ୍ଚୟ, କିନ୍ତୁ ଜ୍ୟୋତ୍ସ୍ନା ଖଣ୍ଡିଏ ଚିଠି ଦେଇଚି । ଚିଠି ଖଣ୍ଡିକ କବ୍ଦୁଦନ ତଳେ ସେ କଟକ ଠିକଣାରେ ପଠାଇଥିଲା । ଘୁରିଘୁରି ଏବେ ଆସି ନରୋତ୍ତମର ହସ୍ତଗତ ହେଲା— ଦୀର୍ଘ ପତ୍ର । ଲେଖିଚି ବହୁତ କଥା । ଏବେ ବି ସେ ବିଭା ହୋଇ ନାହିଁ । ବାପା ପାତ୍ର ଖୋଜୁଚନ୍ତି । ଗୋଟିକ ପରେ ଗୋଟିଏ ଆସି ଦେଖି ଯାଉଚନ୍ତି, ମାତ୍ର ତାର ମନ କାହାରିକି ଗ୍ରହଣ କରିପାରୁ ନାହିଁ । ଥରେ ସେ ଜଣକ ପାଖରେ ମନପ୍ରାଣ ଜ୍ଞାନଧ୍ୟାନ ସବୁତକ ସମର୍ପଣ କରିଦେଇ ସାରିଚି । ସେଇ ଜଣକୁ ସେ ଅପେକ୍ଷା କରି ରହିଚି ଓ ରହିବ ।

ଚିଠିଟାକୁ ପହିଲିଥର ପଢ଼ି ନରୋତ୍ତମ ହସି ଉଠିଲା— ଅପେକ୍ଷା କରି ରହିଚି—ରହିଥାଅ ।

ଦ୍ୱିତୀୟଥର ପଢ଼ି ଦୀର୍ଘ ନିଃଶ୍ୱାସ ଛାଡ଼ିଲା, ମୁହଁଟିକୁ ଶୁଖାଇ ଦେଲା ।

ତୃତୀୟଥର ପଢ଼ିଲା । ମୁଣ୍ଡ ଭିତରଟା କଅଣ ହୋଇଯାଇଚି । ଚିଠିଟିକ ନେଇ ଟେବୁଲ ଡ୍ରୟାରର ମଧ୍ୟରେ ଲୁଚାଇ ଦେଲା । ଖଟ ଉପରେ ମୁହଁମାଡ଼ି ଶୋଇ ରହିଲା ।

ଚତୁର୍ଥ ଥର ପଢ଼ିଲି ଦିନକ ପରେ । କେହି କୁଆଡ଼େ ନାହିଁ । ଚିଠିଟି ପଢୁଛି ମନେ ମନେ ହସୁଛି, ମନେ ମନେ କାନ୍ଦୁଛି । ପଢୁଛି ଏବଂ ଥୋଇ ଦେଉଛି । ପ୍ରତି ଧାଡ଼ିଟି ଏବଂ ପ୍ରତି ଶବ୍ଦଟି ମନେମନେ ଓଜନ କରି, ବିଶ୍ଳେଷଣ କରି, ପର୍ଯ୍ୟବେକ୍ଷଣ କରୁଛି । ମଝିରେ ମଝିରେ ଆଖିରେ ଗୋଟିଏ ଦୋଟି ବିନ୍ଦୁ ଗଡ଼ି ପଡ଼ୁଛି । ଶେଷକୁ ନୈରାଶ୍ୟ ଓ ବିତୃଷ୍ଣା ଦେଖା ଦେଉଛି ମନ ଭିତରେ—ଆଜି କାହିଁକି ? 'ନଜବା ଗାଁଆକୁ ବାଟ' ପଚାରି ଲାଭ କଅଣ ? ସତେ କଅଣ ଜ୍ୟୋତ୍ସ୍ନା ଲେଖିଛି ଏ ଚିଠିଟା ? ନିଶ୍ଚୟ କାହାରି ପ୍ରରୋଚନାରେ ଏଭଳି ସେ ଲେଖିଛି । ଅନ୍ୟର ଭାବ । ହୁଏତ ଜ୍ୟୋତ୍ସ୍ନା ଲେଖନକାରୀ ମାତ୍ର ।

ହସି ଉଠିଲି ନରୋତ୍ତମ—ସେଇ "ମାତ୍ର"ଟିକୁ ଘେନି ମନ ଭିତରେ ମୋର ଏତେ ଇନ୍ଦ୍ରଜାଲ ସୃଷ୍ଟି ହେଉଛି ? ଛି ଛି ! ଦୁର୍ବଳତା । ଦୁର୍ବଳତାକୁ ମନ ଭିତରେ ଆଜି ସ୍ଥାନ ଦେବା ଉଚିତ ହେଉନାହିଁ । ଏତେ ଦିନର ମିଳାମିଶାରେ ନିଜେ ମୁଁ ଯାହା ଦେଖି ଆସିଲି ତାକୁ ଭୁଲି ଯାଇ ଆଜି ମୁଁ ଏ କୃତ୍ରିମ ପତ୍ରଟି ଧରି କାନ୍ଦୁଛି ? ଛି ଛି ! ଛି ଛି !

ଟିକିଟିକି କରି ଚିଠି ଖଣ୍ଡିକୁ ଚିରି ବାହାରକୁ ଫିଙ୍ଗିଦେଲି । ପବନରେ ସେଗୁଡ଼ିକ ଉଡ଼ି ଯାଉଛି । ନରୋତ୍ତମ ତାହାରି ଉଦ୍ଦେଶ୍ୟରେ କହି ଉଠୁଛି—ଉଡ଼ିଯା, ଦୂରେଇ ଯା, କୃତ୍ରିମତାର କୁହୁକ ! ଭ୍ରାନ୍ତିର ସ୍ୱପ୍ନ, ଦୁର୍ବଳ ମନର ଉଦ୍‌ଭ୍ରାନ୍ତତା ଦୂରେଇ ଯା, ଦୂରେଇ ଯା । ହାଲୁକା ମନ ଦେଖି ମନଭୂତ ନାଚ ଲଗାଏ । ବଳିଷ୍ଠ ମନ ପାଖରେ ସେ ଆଦୌ ପଶିପାରେ ନାହିଁ ।

ଯା, ଯା, ଦୂରେଇ ଯା, ପଳେଇ ଯା ।

ଅଜ୍ଞାତସାରରେ ନରୋତ୍ତମ ମନେମନେ ଗୁବୁଗୁବୁ 'ଦୂରେଇଯା' 'ପଳେଇଯା' ବାକ୍ୟଗୁଡ଼ିକୁ କେତେବେଳୁ ସେ ଭୁଣ୍ଡରେ ମଧ ଆବୃତ କରୁଚ, ସେ ଜାଣିପାରୁ ନାହିଁ ।

"କଏ ଦୂରେଇ ଯାଉଚନ୍ତି, କଏ ପଳେଇ ଯାଉଚନ୍ତି ମହାଶୟ" ?

ଦୁଆର ମୁହଁରେ ଠିଆହୋଇ ହସିହସି ପଚ୍ଗୃର ଦେଉଚନ୍ତି ବୃଦ୍ଧ କେଦାରଶ୍ୱର ମହାପାତ୍ର । ନରୋତ୍ତମ ଚଞ୍ଚଳ ହୋଇ ଉଠିଲ । ଠିଆ ହୋଇପଡ଼ି ନମସ୍କାର କଲ । ଲଜ୍ଜାରେ ମୃଦୁମୃଦୁ ହସୁଚନ୍ତି । ମନେମନେ ସଙ୍କୁଚିତ ହୋଇ ପଡ଼ିଲଣି । ଚୌକିଟି ଝାଣି ବସିବାକୁ ଅନୁରୋଧ କଲ ।

ମନେମନେ ମହାପାତ୍ର ହସୁଚନ୍ତି । ଭାବପ୍ରବଣ ଯୁବକ ନରୋତ୍ତମ ଭାବନାର ସ୍ୱପ୍ନଦେଖି ଭାବ ବିହ୍ୱଳ ହୋଇ ପଡ଼ିଥିବାର ଦେଖି ମନେମନେ ସେ ଆମୋଦ ଅନୁଭବ କରୁଚନ୍ତି । ଧୀରେଧୀରେ ଭିତରକୁ ପଶି ଆସି ପଚ୍ଗୃରିଲେ—"ଚନ୍ଦ୍ରଧୂଳି ବାବୁଙ୍କୁ ଦେଖା କରିବାକୁ ଆସିଚ । ଅଛନ୍ତି କି" ?

"ନାହାନ୍ତି ଆଜ୍ଞା । କୁଆଡ଼େ ବୁଲିବୁଲି କରି ଯାଇଚନ୍ତି ବୋଧହୁଏ । ଆସିଲେ କଅଣ କହିବକି" ?

"ଦରକାର କିଛି ନଥିଲ । ଆମ ଗାଁଆରେ ଆଜ ଗୋଟିଏ ନାରୀ ମଙ୍ଗଳ ସମିତି ଉଦ୍‌ଘାଟିତ ହେବାର ଅଛି । ଗାଁର ଝିଅ, ବୋହୂଏ ଏକଯୁଟ ହେଉଚନ୍ତି । ଆପଣ ଗଲେ ଭଲ ହୁଅନ୍ତା । ସେଇଥିଲଗି ମତେ ସେମାନେ ପଠାଇଚନ୍ତି । ଆପଣଙ୍କ ନାମ

ସେମାନେ ଶୁଣିଚନ୍ତି । ଆପଣ ଆଜ ତାଙ୍କ ସଭାରେ ସଭାପତି ଆସନ ଅଲଂକୃତ କରିବେ ।

ମନେ ମନେ ହସିଲେ ନରୋତ୍ତମ ବାବୁ । ଭାବିଲେ—ବୃଦ୍ଧ ମହାପାତ୍ର ଆଧୁନିକ ରୁଚି ସାଙ୍ଗରେ ରଫା କରି ଚଳିବାକୁ ଚାହାନ୍ତି । ତାଙ୍କର ଇଚ୍ଛା ନିଜ ଝିଅଟିକୁ ଦେଖାଇ ଦେବେ । ସେଇଥିଲାଗି ଏତେ ଆୟୋଜନ ଚାଲିଚି । କିମ୍ବା ନାରୀମଙ୍ଗଳ ସମିତିର ଉଦ୍‌ଘାଟନ ଉତ୍ସବରେ ସୁଯୋଗ ନେଇ ଚାହାଁଦେଖା ଉଦ୍ଦେଶ୍ୟଟାକୁ ସମ୍ପନ୍ନ କରାଇ ନେବାକୁ ଚାହାନ୍ତି ।

"ଆପଣ ଆଜ ସଭାପତି ହେବେ । ସଭାଟା ଆମର ଦାଣ୍ଡରେ ବସୁଚି । ସନ୍ଧ୍ୟା ପରେ । ଗାଁର ବୋହୂଝିଅ ସମସ୍ତଙ୍କର ଆନ୍ତରିକ ଅନୁରୋଧ ଆପଣ ନିଶ୍ଚୟ ଯିବେ" ।

ମୃଦୁ ହସି ବୃଦ୍ଧ ଆଡ଼କୁ ଚାହିଁ ରହିଚନ୍ତି ନରୋତ୍ତମ ବାବୁ । ବିବାହ ପ୍ରସ୍ତାବଟା ତାଙ୍କରି ଘରେ ସ୍ଥିର ହୋଇଚି । ତାଙ୍କରି ଦାଣ୍ଡରେ ସଭା । ସେ ହେବେ ସଭାପତି । ରହସ୍ୟ ଏଥିରେ କିଛି ନାହିଁ । କିନ୍ତୁ ନାହିଁ କରିଦେବାର ଉପାୟ କଅଣ ? ମହାପାତ୍ରେ ସ୍କୁଲ କମିଟିର ଜଣେ ବିଶିଷ୍ଟ ସଭ୍ୟ ଏବଂ ଜଣେ ଗଣ୍ୟ ମାନ୍ୟ ବ୍ୟକ୍ତି ।

କଥାଟାକୁ ବୁଲାଇଦେଇ ନରୋତ୍ତମ କହିଲେ—"ଆପଣ ଗୋଟିଏ କାମ କରନ୍ତୁ ଆଜ୍ଞା । ମାମୁଁଙ୍କୁ ସଭାପତି କରନ୍ତୁ । ତାଙ୍କୁଇ ନିମନ୍ତ୍ରଣ କରନ୍ତୁ" ।

ମହାପାତ୍ର—"ସେ ନିଶ୍ଚୟ ଯିବେ । ରାଜି ହୁଅନ୍ତୁ ବା ନହୁଅନ୍ତୁ ତାଙ୍କୁ ମୁଁ ଧରି ବାନ୍ଧି ନେଇ ନେବି । ସେ ପିଲାମାନଙ୍କୁ କିଛି

କହିବେ । ଆଜିର ସଭାରେ ସେ ହେବେ ବିଶିଷ୍ଟ ଅତିଥି । ଅନେକ ଦିନରୁ ଆମ ଗାଁ ପିଲାଏ ଆପଣଙ୍କୁ ଦେଖିବାକୁ ଚାହିଁ ବସିଛନ୍ତି । ଆପଣ ନିଶ୍ଚୟ ଯିବେ" ।

"କିନ୍ତୁ ମାମୁଁଙ୍କ ଉପସ୍ଥିତିରେ ମୁଁ ହେବି ସଭାପତି" ?

"ସେଥିରେ କିଛି ନାହିଁ । ପଣ୍ଡିତ ଜବାହରଲାଲ ସଭାପତି ଥିଲାବେଳେ ତାଙ୍କ ପିତା ପଣ୍ଡିତ ମୋତିଲାଲ ଥିଲେ କଂଗ୍ରେସ କମିଟିର ଜଣେ ସାଧାରଣ ସଭ୍ୟ । ଯୋଗ୍ୟ ପୁଅକୁ ଉଚ୍ଚ ଆସନରେ ବସାଇ ବାପ ଯିନା ଗୌରବ ଲଭେ । ଆପଣ ମନା କରନ୍ତୁ ନାହିଁ । ଅଳ୍ପ ତ ବାଟ । ପାଞ୍ଚଟା ବେଳକୁ ମୁଁ ନେଇ ଆସିବି । ମାମୁଁଙ୍କୁ କହିଥିବେ, କୁଆଡେ ଯିବେ ନାହିଁ" ।

"ଆପଣ ମାମୁଁଙ୍କୁ ଥରେ ପଚାରନ୍ତୁ । ସେ କଅଣ କହୁଚନ୍ତି"—

"କଅଣ କହିବେ ସେ । ସେ ତ ମୋର ବନ୍ଧୁ । ଦଶ ବାର ଦିନ ପରେ ସେ ହେବେ ମୋର ସମ୍ବନ୍ଧୀ । ତାଙ୍କ ଉପରେ କଅଣ ଏତିକ ମୋର ଅଧିକାର ନାହିଁ" ?

ବୃଦ୍ଧ ମହାପାତ୍ରେ ମୃଦୁମୃଦୁ ହସୁଚନ୍ତି ।

"ଉଠିଲ ତେବେ" ?

ମୁଣ୍ଡ କୁଣ୍ଡାଉ କୁଣ୍ଡାଉ ନରୋତ୍ତମ ବାଧ୍ୟ ହୋଇ କହିଉଠିଲେ— "ଯୁକ୍ତିରେ ଆପଣଙ୍କ ନିକଟରେ ମୁଁ ନିଶ୍ଚୟ ପରାସ୍ତ ହେବି । ଆପଣଙ୍କ ଆଦେଶ ପାଳନ କରିବାକୁ ମୁଁ ବାଧ୍ୟ । କିନ୍ତୁ ସଭାପତିତ୍ୱ ପାଇଁ ଆପଣ ମୋ ପରି ଅଯୋଗ୍ୟକୁ ବାଛିବା ଭୁଲ ହୋଇଚି" ।

"ହଉ ସଭାରେ ସମସ୍ତେ ଯୋଗ୍ୟତା ବା ଅଯୋଗ୍ୟତାର ପରିଚୟ ପାଇବେ ଯେ ।

ବୃଦ୍ଧ ମୃଦୁ ମୃଦୁ ହସୁଥିଲେ । ଧୀରେ ଧୀରେ ହସି ହସି ବିଦାୟ ଦେଉଥିଲେ । ତାଙ୍କ ଯୁଗରେ ପାଣ୍ଡାମାନଙ୍କର ବିବାହ ପୂର୍ବରୁ କନ୍ୟା ସାକ୍ଷାତ ହେବା କଥାଟା ଅଶୋଭନୀୟ ବୋଲି ବିବେଚିତ ହେଉଥିଲା । କିନ୍ତୁ ତାଙ୍କର ଏ ବୃଦ୍ଧ ବୟସ ବେଳକୁ ସେ ନିଜେ ନିଜ ଝିଅଟିକୁ ଦେଖାଇବା ନିମନ୍ତେ ନରୋତ୍ତମଙ୍କୁ ନିମନ୍ତ୍ରଣ କରି ଯାଉଛନ୍ତି । ଆଉ ଗୋଟିଏ ପୁରୁଷ ପରେ ହୁଏତ କେତେ କଅଣ ଆହୁରି ପରିବର୍ତ୍ତନ ଦେଖା ଦେଇଥିବ । ଏଇକଥା ଭାବୁ ଭାବୁ ନରୋତ୍ତମ ଚିନ୍ତା ସବୁ କଥା ଏକାଠବେଳକେ ଭୁଲିଯାଇ ନିତ୍ୟକର୍ମ ଶେଷ କରିବାକୁ ବାହାରି ପଡ଼ିଲେ । ସମୟ ଓ ଘଟନା ଚକ୍ରର ସ୍ରୋତ ଏହିଭଳି ଭାବରେ ମଣିଷକୁ ପଛକଥା ଭୁଲାଇ ଆଗକୁ ଭସାଇ ନେଇ ଯାଉଛି । ଦାଣ୍ଡଘରେ ମାମୁଁଙ୍କ ସହିତ କଥାବାର୍ତ୍ତା ହେଉ ହେଉ ପୁଣି ଥରେ ମହାପାତ୍ରେ ଫେରି ଆସୁଥିଲେ ।

"ଆପଣ ମତେ ଆଉ ରକ୍ଷା କରିଦେବେ ନାହିଁ ମହାପାତ୍ରେ ମହାଶୟ ! ନରୁ ତ ଯାଉଛି । ସଭାପତି ହେବାର ଯୋଗ୍ୟ-ସେ । ଏ ବୁଢ଼ା ଅଳସୁଆଟାକୁ କାହିଁକି ଟାଣୁଛନ୍ତି ଆପଣ" ?

"ମୁଁ ଟାଣୁ ନାହିଁ ଆଜ୍ଞା । ଆପଣଙ୍କ ସୌଜନ୍ୟହିଁ ଆପଣଙ୍କୁ ଆମନ୍ତ୍ରଣ କରି ନେଉଛି । ସେଦିନ ଆପଣ ଆମ ଘରେ ପଦାର୍ପଣ କରି ଆସିଛନ୍ତି । ଗାଁଟା ସାରା ଝିଅ ବୋହୂ ପିଲା ବୁଢ଼ା ଆପଣଙ୍କ ଦର୍ଶନ ପାଇବା ଲାଗି ବ୍ୟାକୁଳ । ସେମାନଙ୍କୁ ଆପଣ ବିଶିଷ୍ଟ ଅତିଥି ହିସାବରେ ଦିପଦ କିଛି ନ କହିଲେ ସେମାନେ କଅଣ ଛାଡ଼ିବେ ? ନ ଗଲେ ବୋହୂ କେଇଟା ଆସି ଆପଣଙ୍କ ଦୁଆରେ ହାତ ଯୋଡ଼ି ଛିଡ଼ା ହୋଇଯିବେ ସିନା" !

ହସିଲେ ଚଉଧୁରୀ ବାବୁ । କହିଲେ—"ହଉ ଗ୍ଲନ୍ତୁ । କିନ୍ତୁ ମୁଁ ତ କିଛି କହିପାରିବ ନାହିଁ । ଲୋକହସାଟି ହୋଇ ଫେରିବ ସିନା" ।

"ଆମ ଗାଁଆର ଲୋକେ ଆପଣଙ୍କୁ ଦେଖିଲେ ହିଁ ହସିବେ । ଏ କଥାଟି ସତ । କାରଣ ହେଲା ଆମ ଗାଁ ସହିତ ଆପଣଙ୍କର ଭଗ୍ନା ସମ୍ବନ୍ଧ" ।

ହାତ ଧରି ପକାଇଲେ ଚଉଧୁରୀ ବାବୁ । କହି ଉଠିଲେ— "ଭଗ୍ନା ସମ୍ବନ୍ଧ କଅଣ ହେ ପଣ୍ଡିତେ ? କଥା ସ୍ଥିର ହେଲାବେଳକୁ ସମ୍ବନ୍ଧଟା ହୋଇସାରିଚି ନା ବାକି ଅଛି" ?

ହସିଲେ ମହାପାତ୍ରେ । ପଚାରିଲେ—"ତେବେ ଆଜ୍ଞା" ?

"ଆଉ କଅଣ କହିବ । ଯିବି ତ" ।

"ତେବେ ନମସ୍କାର । ବିଦାୟ ନେଲି" ?

× × × ×

ନାରୀ ମଙ୍ଗଳ ସମିତିର ଉଦ୍‌ଘାଟନ ଉତ୍ସବ । ସଭା ମଣ୍ଡପ ସଜା ହୋଇଛି । ତଳେ ମସିଣା ଓ ସତରଞ୍ଜି । ସଭାପତି ଏବଂ ବିଶିଷ୍ଟ ଭଦ୍ର ଲୋକମାନଙ୍କ ପାଇଁ କେତେଗୁଡ଼ିଏ ଚଉକି ସଜାଯାଇଛି । ସଭାପତି ଆସନ ଆଗରେ ଟେବୁଲ, ଟେବୁଲକ୍ଲଥ ଓ ଫୁଲଦାନୀ । ବଡ଼ ଆଲୁଅ କେଇଟା ଏଣେ ତେଣେ ଝୁଲୁଚି । ସଭାପତିଙ୍କ ପଛ ଆଡ଼କୁ ଲମ୍ବ ପରଦାଟିଏ ଟଣା ଯାଇଛି । ପରଦା ପଛପଟେ ଉଦ୍ୟୋକ୍ତାମାନଙ୍କ ଗ୍ରୀନ୍‌ରୁମ୍ ବା ଆୟୋଜନାଳୟ । ଧୀରେ ଧୀରେ ଗାଁର ସବୁ ଝିଅ, ସବୁ ବୋହୂ, ସବୁ ବୁଢ଼ା, ସବୁ ବୁଢ଼ୀ, ପିଲାପିଲି ସମସ୍ତେ ଆସି ରୁଣ୍ଡ ହୋଇଗଲେ । ବିଶିଷ୍ଟ ଅତିଥି ଏବଂ ସଭାପତିଙ୍କୁ ମହାପାତ୍ର ମହାଶୟ ଏବଂ ଜଣେ ବୟସ୍କା ଭଦ୍ରମହିଳା ପାଛୋଟି ନେଇ

ଯଥାଯୋଗ୍ୟ ଆସନରେ ବସାଇଦେଲେ । ନରୋତ୍ତମ ମାମୁଁଙ୍କଠାରୁ ଅଳ୍ପ ଦୂରରେ ସଙ୍କୁଚିତ ଭାବରେ ବସିଥାଆନ୍ତି । ସଭାପତିଙ୍କ ଆସନଟି ଖାଲି ପଡ଼ିଥାଏ । ଏବଂ ତୁରି ତାବଲ୍ ବାଜିଉଠିଲା । କେତୋଟି ଝିଅ ଏକ ସ୍ୱରରେ ମଙ୍ଗଳାଚରଣ ସଂଗୀତ ବୋଲି ସମସ୍ତଙ୍କୁ ମୁଗ୍ଧ କରିଦେଲେ । ତା ପରେ ସଭାକାର୍ଯ୍ୟ ଆରମ୍ଭ ହେବ । ମାମୁଲି ପ୍ରଥାନୁସାରେ ସଭାପତି ନିର୍ବାଚନଟା ସର୍ବପ୍ରଥମ । ଜଣେ ଭଦ୍ର ମହିଳା ପ୍ରସ୍ତାବ ଆଣିଲେ ଏବଂ ଆଉ ଜଣେ ଅନୁମୋଦନ କଲେ । ବୃଦ୍ଧ କେଦାରେଶ୍ୱର ହସି ହସି ନରୋତ୍ତମ ବସିଥିବା ଚୌକି ଖଣ୍ଡିକ ପାଖକୁ ଆସି କହିଲେ—"ଆସିବା ହୁଅନ୍ତୁ । ସଭାପତି ଆସନଟି ଅଳଂକୃତ କରନ୍ତୁ" ।

ଅତି ସଙ୍କୁଚିତ ଭାବରେ ନରୋତ୍ତମ ମାମୁଁଙ୍କ ଆଡ଼କୁ ଅନେଇଲେ। ମାମୁଁ କହି ଉଠିଲେ—"ଯାଅ ବାବା ! ତୁମେ ହିଁ ସେ ଆସନ ପାଇଁ ଯଥାର୍ଥରେ ଯୋଗ୍ୟ" । ଧୀରେ ଧୀରେ ଉଠି ଆସି ନରୋତ୍ତମ ସଭାପତି ଆସନରେ ସଙ୍କୁଚିତ ଭାବରେ ବସି ପଡ଼ିଲେ । ଆଗ ପଛ ଚାରିଆଡ଼ୁ ଏକ ସ୍ୱରରେ ଶତସହସ୍ର କରତାଳି ଓ ମହିଳା-ମାନଙ୍କ ମଙ୍ଗଳଧ୍ୱନି ହୁଳହୁଳିରେ ସଭା ମଣ୍ଡପ ପ୍ରକମ୍ପିତ ହୋଇ ଉଠିଲା ।

ତା ପରେ ମାଲ୍ୟାର୍ପଣ । ଦୋଟି ଝିଅ ଦୁଇଟି ପୁଷ୍ପମାଳା ଧରି ଆୟୋଜନାଳୟ ଆଡ଼ୁ ବାହାରି ଆସିଲେ । ଗୋଟିକ ମୁଣ୍ଡରେ ଓଢ଼ଣା ଅଛି । ସେଇଟି ମହାପାତ୍ରଙ୍କ କନ୍ୟା, ଆରଟିର ମୁଣ୍ଡ ମୁକୁଳା । ଲମ୍ବ ବେଣି ପିଠି ଉପରକୁ ଝୁଲୁଛି । ମହାପାତ୍ରଙ୍କ ପୁତ୍ରବଧୂ ସଙ୍ଗେ ସଙ୍ଗେ ଥାଇ ଏ ଦୁହିଁଙ୍କି ଆଗରେ ଆଣୁଚନ୍ତି । ସଭାପତି ଏକ ପ୍ରକାର ଅଧୋବଦନରେ ବସି ରହିଚନ୍ତି । କେଦାର ବାବୁଙ୍କ ଝିଅଟି ପଛେଇ ଯାଉଚନ୍ତି । ସେ ଜାଣନ୍ତି ଆଜିର ସଭାପତି ତାଙ୍କର

ପାଇଁ ବସ୍ତ୍ର ଯାଇଚନ୍ତି । ଓଢ଼ଣା ତଳୁ ଦୃଷ୍ଟି ପକାଇ ଝିଅଟି ଲଜ୍ଜିତ ଓ ସଙ୍କୁଚିତ ହୋଇ ଯାଉଚି । ଆଗେଇ ଯାଇ ପାରୁନାହିଁ । ଦେହଟି ତାର ଥରୁଚି । ପଛରୁ ଏକପ୍ରକାର ଠେଲି ଠେଲି ଆଗେଇ ନେଇ ଯାଉଚନ୍ତି ମହାପାତ୍ରଙ୍କ ପୁତ୍ରବଧୂ । ଏ ଦୃଶ୍ୟ ଅଳ୍ପେ ବହୁତେ ସମସ୍ତେ ଉପଭୋଗ କରୁଚନ୍ତି । ସଭାପତିଙ୍କ ସହିତ ଏ ପିଲାର ଭାବୀ ସମ୍ବନ୍ଧଟି କଅଣ ସେ କଥା ସମସ୍ତେ ଜାଣିଚନ୍ତି । ସମସ୍ତେ ହସୁଚନ୍ତି । ଅଳ୍ପ ଦୂରରେ ଥାଇ ମହାପାତ୍ରେ କହି ଉଠିଲେ—"ବନ୍ଦିନି ମୋର ଝିଅ" । ସଭାପତି ଚଞ୍ଚଳ ହୋଇ ଉଠି ଚୁହିଁଦେଲେ । ଚୁହିଁଦେଇ ଅସ୍ଥିର ହୋଇ ଉଠିଲେ । ଝିଅଟି ଫୁଲ ମାଳାଟିକୁ ଧରି କମ୍ପିତ କରରେ ସଭାପତିଙ୍କ ଗଳାରେ ଲମ୍ବାଇ ଦେଲା । ଅତି ଅଧୀର ଭାବେ ପରିସ୍ଥିତି ଭୁଲିଯାଇ ପାଗଳପରି ସଭାପତି କହି ଉଠିଲେ—"କିଏ ! ଅନୁରାଧା !! ରାଧି" ?

ସଭାପତି ଆସନର ଗୋଟିଏ କଡ଼କୁ ଠିଆ ହୋଇ ବାଳକାଟି ସଭା ମଣ୍ଡପ ଆଡ଼କୁ ଅନାଇ ଥରଥର ହୋଇ ଥରୁଚି । ଭାଉଜ ତାର ଓଢ଼ଣାଟିକୁ ଟାଣି ନେଇ ମୁହଁଟିକୁ ତାର ସମ୍ପୂର୍ଣ୍ଣଭାବେ ମୁକ୍ତ କରି ଦେଲା ।

ଉନ୍ମତ୍ତ ପରି ଠିଆ ହୋଇପଡ଼ି ସଭାପତି କହି ଉଠିଲେ— "ଅନୁ, ରାଧା" !

ସେ ବି ଗୋଟିପଣେ ଥରୁଚନ୍ତି । ଅଦୂରରୁ ମାମୁଁ ଜାବା ହୋଇ ଏ ଦୃଶ୍ୟ ଦେଖୁଚନ୍ତି ।

ବୃଦ୍ଧ ମହାପାତ୍ର ଠିଆହୋଇ କହି ଉଠିଲେ—"ମୋର ଝିଅ, ଅନୁରାଧା" । ଚାରିଆଡ଼ୁ ଘନଘନ କରତାଳି ଓ ହୁଳହୁଳି କମ୍ପି ଉଠିଲା ।

ସଭା ମଣ୍ଡପର ଦୂରବର୍ତ୍ତୀ ଗୋଟିଏ କୋଣରୁ କଏ ଜଣେ ବଡ଼ ପାଟିରେ କହି ଉଠିଲା—"ବନ୍ଦକର । ବନ୍ଦକର । ମିଥ୍ୟାବାଦୀର ମିଥ୍ୟାଳାପ ବନ୍ଦ ହେଉ । ବନ୍ଦ କରିଦିଅ ମିଥ୍ୟା ପ୍ରଶ୍ନର । କୃତ୍ରିମ ସଭା ଭାଙ୍ଗି ଦିଅ" ।

କରତାଳି ବନ୍ଦ ହୋଇଗଲା । ସମସ୍ତେ କାବାହୋଇ ପଛକୁ ଚାହିଁଲେ । ପଛରୁ ପୁଣି ଶୁଭିଲା—"ବୁଢ଼ାଟା କେତେ ମିଛ କହି ଜାଣେ ହେ । ହେ ଭଗବାନ" !

ମହାପାତ୍ରଙ୍କ ସ୍ଥିଅଟି ବିଚଳିତ ହୋଇ ପଡ଼ିଲାଣି । ବରଡ଼ାପତ୍ର ପରି ସାରା ଅଙ୍ଗଟି ତାର ଥରି ଉଠୁଚି । ଯନ୍ତ୍ରଜ ତାକୁ ଏକ ପ୍ରକାର କୋଳ ଆଡ଼କୁ ଆଉଜାଇ ଧରି ଠିଆ କରାଇଚନ୍ତି । ସଭା ଆରମ୍ଭରୁ ତ ଏତେ ଗୋଳମାଳ ।

ବୃଦ୍ଧ ମହାପାତ୍ରେ ଉଚ୍ଚ ସ୍ୱରରେ କହି ଉଠିଲେ—"କଏ ସେ ଉନ୍ମତ୍ତ ପାଗଳ ? କହୁଚି ମିଥ୍ୟାବାଦୀ ମୁଁ" ?

ପଛରୁ ଶୁଭିଲା –"ମିଥ୍ୟାବାଦୀ ତୁମେ । ତୁମେ ହିଁ ମିଥ୍ୟାବାଦୀ" ।

"ଆଗକୁ ଆସ ସତ୍ୟବାଦୀ, ତୁମେ କଏ ଦେଖିବା । କଅଣ କହୁଚ ତୁମେ ସାମନାକୁ ଆସି କୁହ" ।

ଦୁର୍ବଳ ଶରୀରଟାକୁ ଉଗ୍ର ଉତ୍ତେଜନାରେ ଯଥା ସମ୍ଭବ ସବଳ କରାଇ ଠଙ୍ଗଠଙ୍ଗ ମାଡ଼ିଆସୁଚି ଜଣେ କଙ୍କାଳସାର ବୃଦ୍ଧ । କହିକହି ଆସୁଚି –"ମିଥ୍ୟାବାଦୀ ତୁମେ ହିଁ ମହାପାତ୍ରେ । ଅନୁରାଧା ମୋର କନ୍ୟା । ମୋର ନା ଦିବ୍ୟସିଂହ ରାଜଗୁରୁ । ବଞ୍ଚିଚି ମୁଁ ମରି ନାହିଁ" ।

ଆସନ ମର୍ଯ୍ୟାଦା ଓ କର୍ତ୍ତବ୍ୟ ଜ୍ଞାନ ସମ୍ପୂର୍ଣ୍ଣ ରୂପେ ଭୁଲିଯାଇ ସଭାପତି ଆଗେଇ ଗଲେ ଉନ୍ମତ୍ତ ପାଗଳ ଆଡ଼କୁ । "ଆପଣ ରାଜଗୁରୁ—ଦିବ୍ୟସିଂହ ରାଜଗୁରୁ ଆପଣ" ?

"ମୁହିଁ ବାପା, ଦିବ୍ୟସିଂହ ରାଜଗୁରୁ । ନରୋତ୍ତମ ବାବୁ ! ଅନୁରାଧା ମୋର ଝିଅ" ।

ରାଜଗୁରୁଙ୍କ ଦୁର୍ବଳ ବକ୍ଷ ଉପରେ ନରୋତ୍ତମ ଢଳି ପଡ଼ିଲେ । କଙ୍କାଳସାର ହସ୍ତ ଦୁଇଟିକ ରାଜଗୁରୁ ନରୋତ୍ତମଙ୍କ ପିଠି ଉପରେ ଗୁଡ଼ାଇ ଧରି କହି ଉଠିଲେ—"ବଞ୍ଚିଛି ମୁଁ ବାପା । ମରି ନାହିଁ । ମୋର ଝିଅ ଅନୁରାଧା । ମହାପାତ୍ରେ ମିଥ୍ୟା କହୁଛନ୍ତି" ।

ପଣ୍ଡିତ କେଦାରେଶ୍ୱର ପାଖକୁ ଲାଗିଆସି ରାଜଗୁରୁଙ୍କ ହାତ ଦୁଇଟାକୁ ଛଡ଼ାଇ ନେଇ କହିଲେ—"ମିଥ୍ୟାବାଦୀ ତୁମେ ରାଜଗୁରୁ । ଆସ ଆଗକୁ । ସଭା କାର୍ଯ୍ୟରେ ବାଧା ଦିଅନାହିଁ । ପାଗଳ, ଉନ୍ମତ୍ତ ! ଚିତ୍ତ ସ୍ଥିର କର । ଅନୁରାଧାକୁ ହୁଏ ତ ତୁମେ ଜନ୍ମ ଦେଇ ଥିଲ । କିନ୍ତୁ ନଦୀରେ ଭାସି ଯାଉଥିବା ଅବସ୍ଥାରେ ମୁଁ ପାଇଛି । ପାଳିଛି । ସେ ମୋର ପାଳିତା କନ୍ୟା" ।

ଲୋକ ଗହଳି ଠେଲିପେଲି ତିନିଙ୍କି ଆଣି ସଭାପତି ଆସନ ନିକଟରେ ପହଞ୍ଚାଇ ଦେଲେ । ସଭାପତିଙ୍କୁ ବସାଇ ଦେଲେ ତାଙ୍କ ଆସନରେ । ରାଜଗୁରୁଙ୍କୁ ଉଠାଇନେଇ ଗୋଟିଏ ଚୌକି ଉପରେ ବସାଇ ଦେଇ ମହାପାତ୍ରେ ଧମକଦେଇ କହିଲେ—"ବସନ୍ତୁ ଆପଣ । ବସିବା ହୁଅନ୍ତୁ । ଅନୁରାଧା ନିକଟକୁ ଯାଇ ଦେଖିଲେ ସେ ଠିଆଠିଆ କାଠ ପାଲଟି ଯାଇଛି । ହାତ ଦୁଇଟାକୁ ତାର ଧରି ଆଣି ମହାପାତ୍ରେ ସଭାପତିଙ୍କ ହାତରେ ସମର୍ପି ଦେଲେ ଏବଂ

କହିଲେ—"ଆଜ ଏ ସଭାରେ ମୁଁ ଆପଣଙ୍କୁ କନ୍ୟାଦାନ କଲି । ସଭାରେ ଉପସ୍ଥିତ ସମସ୍ତ ଭଦ୍ରବ୍ୟକ୍ତି ଓ ଭଦ୍ର ମହିଳା ସାକ୍ଷୀ ରହିଲେ । ଆଉ ସାକ୍ଷୀ ରହିଲେ ଦଣ୍ଡଦିଗ ପାଳ ଏବଂ ପ୍ରଜ୍ୱଳିତ ଅଗ୍ନି" ।

ଗୁରିଆଡ଼ୁ ହୁଳହୁଳି ଓ କରତାଳିରେ ସଭା ମଣ୍ଡପ କମ୍ପି ଉଠିଲା ।

ବହୁତ ବେଳ ପରେ କରତାଳି ବନ୍ଦ ହେଲାରୁ ମହାପାତ୍ରେ ରାଜଗୁରୁଙ୍କ ନିକଟକୁ ଆସି ଠିଆ ହେଲେ । ପଥର ପ୍ରତିମା ପରି ସେ ବସି ରହିଛନ୍ତି । ଧୀରେ ଧୀରେ ପ୍ରଳାପ ବାଣି ଉଚାରଣ କରୁଛନ୍ତି— "ମିଥ୍ୟାଗ୍ଣର, ମିଥ୍ୟାବାଦ" ।

ମହାପାତ୍ରେ ହସି ହସି ରାଜଗୁରୁଙ୍କ ହାତ ଦିଟାକୁ ଜାବୁଡ଼ି ଧରି କହି ପକାଇଲେ—"କ୍ଷମା ଦିଅନ୍ତୁ ରାଜଗୁରୁ ! ମୁଁ ମିଥ୍ୟାବାଦୀ ହେଲେ ହେଲି ପଛକେ ବେଦୀ ଉପରେ ଆପଣ ଆପଣଙ୍କ କନ୍ୟା ଦାନ କରିବେ । ବୈଦିକ ରୀତିରେ ଆଠ ଦିନ ପରେ ବିବାହ କାର୍ଯ୍ୟ ସମ୍ପାଦିତ ହେବ । ଆପଣ ଆମରି ଘରେ ରହିବେ" ।

ବସିଲା ଥାନରୁ ଉଠି ପଡ଼ି ରାଜଗୁରୁ ନିଜର ଦୁର୍ବଳ ହାତ ଦୁଇଟାରେ ମହାପାତ୍ରଙ୍କୁ କୁଣ୍ଢାଇ ପକାଇଲେ । ହତଜ୍ଞାନ ଅନୁରାଧା ଜ୍ଞାନ ଫେରି ପାଇଛି । ପାଗଳ ପରି ରାଜଗୁରୁଙ୍କ ପାଖକୁ ଦୌଡ଼ି ଆସି ପଡ଼ି ଯାଇଛି ବୃଦ୍ଧ ପିତାର ପାଦ ତଳେ । ବଡ଼ ପାଟିରେ କହି ଉଠିଲା—"ବାପା" ?

ମହାପାତ୍ରଙ୍କୁ ଛାଡ଼ି ଝିଅକୁ ଉଠାଇ ଉଠାଇ ରାଜଗୁରୁ କହି ଉଠିଲେ—"ବଞ୍ଚିଗଲେ ମା ! ମୁଁ ବଞ୍ଚିଛି !! ମରିନାହିଁ । ସେଦିନ

ସ୍ରୋତରେ ନୌକାରୁ ଖସି ପଡ଼ିଲି । କାଠ ଖଣ୍ଡିକ ହାତରେ ଥିଲା । ସେଇ ଖଣ୍ଡିକ ମୋତେ ବଞ୍ଚାଇ ଦେଲା" ।

ସନ୍ଧ୍ୟାଗତ ଚୌକିର ପୃଷ୍ଠ ଦେଶକୁ ଆଉଜାଇ ଏକ ଲକ୍ଷ୍ୟରେ ଶୂନ୍ୟ ଗଗନ ଆଡ଼େ ଚାହିଁ ରହିଚନ୍ତି, ଆଖି ଦୁଇଟିରୁ ଦୁଇଟି ଧାର ଲୁହ ବହିଯାଉଚି ବକ୍ଷ ଉପରେ । ଭାବୁଚନ୍ତି—ଏ ଦୁନିଆରେ କଅଣ କେମିତି ଘଟି ଯାଉଚି । ଅଦେଖା ହାତର କାରାମତି କେତେଦୂର, କାହାରିକି ତ କିଛି ଜଣା ପଡ଼ୁନାହିଁ ।

ସ୍ୱଭାବ-ଗମ୍ଭୀର ହରେକୃଷ୍ଣ ବାବୁ ବରିଷ୍ଠ ଅତିଥି ରୂପେ ଜଳ ଜଳ ଚାହିଁ ରହିଚନ୍ତି ମାତ୍ର ଗୋଟିଏ ପଲକୁ ଆଉ ଗୋଟିଏ ଦୀର୍ଘ ନିଶ୍ୱାସ ଛାଡ଼ି ଭାବୁଚନ୍ତି—ଦୁନିଆଟା ସବୁଯାକ ମିଥ୍ୟା, ସବୁଯାକ ମାୟା । ଏକମାତ୍ର ସତ୍ୟ ହେଲା ମାୟାର ଖେଳ ।

ଅନେକ ବେଳ ହେଲା ଆର ଝିଅଟି ଫୁଲ ମାଳଟିକୁ ଧରି କାବା ହୋଇ ଠିଆ ହୋଇ ରହିଥାଏ । ମହାପାତ୍ରେ ଡାକ ଦେଲେ— "ତୁ କାହିଁକି ମା ! ଫୁଲ ମାଳଟା ଧରି ଠିଆହୋଇ ରହିଚୁ ? ତୋ ବର ଗଳାରେ ଦୋହଲେଇ ଦେ ତାକୁ" ।

ହସୁଚି ସାନ ଝିଅଟି । ଅନୁରାଧାର ଭଉଣୀ ପାଖକୁ ଆସି କହିଲା—ଆ ଆଲେମା ! ତୋ ବର ବେକରେ ତୁ ନିଜେ ଏ ବରଣ ମାଳାଟା ପିନ୍ଧେଇ ଦଦୁପରା ?

ସେ ହେଉଚନ୍ତି ଝିଅଟିର ମାଆ ।

ହସିହସି ସାନ ଝିଅଟି ଫୁଲ ମାଳାଟିକି ନେଇ ବରିଷ୍ଠ ଅତିଥିଙ୍କ ଗଳାରେ ଲମ୍ବାଇ ଦେଲା । ନମସ୍କାର କରି ତାର ମାଆ କହି ଉଠିଲେ—"ଆପଣଙ୍କ ନାତୁଣୀ ହେବ ଇଏ, ମୋର ଝିଅ" ।

ହସି ହସି ହରେକୃଷ୍ଣ ବାବୁ ପିଲାଟିକ ନଜ କୋଳକୁ ଉଠାଇ ନେଇ କହିଲେ, ତୁ ଇ ଠିକ୍ ମୋର କନ୍ୟା । ଖୋଦ ମାଆ ତ କନ୍ୟାଦାନ କରିଦେଲେ ଆଉ କଅଣ ବାକି" ?

ସଭାମଣ୍ଡପର ଚାରିଆଡ଼ୁ କରତାଳି ଓ ହୁଳହୁଳି ଶବ୍ଦ ଉଠିଲା । ସେ ଦିନର ସଭା ସେତିକରେ ଅପୂର୍ଣ୍ଣ ରହି ବିବାହ ତିଥିକୁ ମୁଲତବୀ ରହିଲା । ବିଶିଷ୍ଟ ଅତିଥି ସେଦିନ ତାଙ୍କ ବକ୍ତବ୍ୟ ଶୁଣାଇବେ । ଉଦ୍ୟୋକ୍ତାମାନଙ୍କ ତରଫରୁ ମହାପାତ୍ର ମହାଶୟ ସଭାରେ ଉପସ୍ଥିତ ଥିବା ସମସ୍ତଙ୍କୁ ହାତଯୋଡ଼ି ଅନୁରୋଧ ଜଣାଇଲେ—"ମୋର ଶତ ଅନୁରୋଧ, ଆପଣମାନେ ସମସ୍ତେ ସେଦିନ ସଭାରେ ଉପସ୍ଥିତ ରହି ସବୁ ଶୁଭରେ ସଭାକାର୍ଯ୍ୟଟି ସାଙ୍ଗ କରାଇବେ ।

ହସି ହସି ସାନ ଝିଅଟି କହି ଉଠିଲା—"ମୋ ବର ତରଫରୁ ଆପଣମାନଙ୍କୁ ମୁଁ ଆଜ ଗୋଟିଏ ଅନୁରୋଧ କରୁଛି, ସେ ଦିନର ଆଳପଣା ସଭାରେ ଆପଣମାନେ ସମସ୍ତେ ନିଶ୍ଚୟ ଯୋଗଦେବେ" ।

ସଭା ମଣ୍ଡପର ଚତୁର୍ଦ୍ଦିଗରେ ଉଚ୍ଚହାସ୍ୟ ଓ କରତାଳି ଧ୍ୱନି ପ୍ରକମ୍ପିତ ହୋଇ ଉଠିଲା ।

—ସମାପ୍ତ—

ମୁଦ୍ରଣ—ଅରୁଣ ପ୍ରିଣ୍ଟିଙ୍ଗ୍ ଓ୍ୱାର୍କସ୍, ବ୍ରହ୍ମପୁର-୨ (ଗଞ୍ଜାମ)